

ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ସମ୍ପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ମାସିକ ସାହିତ୍ୟ ଇ-ପତ୍ରିକା

# ଆହ୍ୱାନ

୫

ଫେବୃଆରୀ ୨୦୧୬ ସଂସ୍କରଣ

ନିର୍ଭୟା

ପ୍ରେୟସୀ

ସଂଭୋଗ

ଅଭିଳାଷ

ପ୍ରହେଳିକା

ସାହିତ୍ୟସଭା

ପୁସ୍ତକ ସମୀକ୍ଷା -
ଜୀବନଯାତ୍ରା

କାଠ କଣ୍ଢେଇ

ସୁଜାତା ପାଇଁ ପଦେ

ଆମ୍ବତୋଟାର ମୋହ

ଅର୍ଥ ଓ ଅନର୍ଥ

ଜିକା ଭୂତାଣୁ ଆତଙ୍କ

ଈଶ୍ୱର ବିଶ୍ୱାସରୁ ବଳ ମିଳେ

ଏକାଦଶ ବର୍ଷ, ଦ୍ୱିତୀୟ ସଂଖ୍ୟା
ଫେବୃଆରୀ ୨୦୧୭

www.aahwaan.com

# ଆହ୍ୱାନ

ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟ ଇ-ପତ୍ରିକା

ପ୍ରତିଷ୍ଠାତା - ସମ୍ପାଦକ

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍., ପି.ଜି.ଡ଼ି,ଏମ୍.ସି.ଏଚ୍, ପି.ଜି.ଡ଼ି.ଏଚ୍.ଏମ୍

ବୀମା ନଗର, ଦ୍ୱିତୀୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଫୋନ୍ : ୯୦୪୦୯୮୫୪୭୩ ଇ-ମେଲ୍ : aahwaan@gmail.com

‘ଆହ୍ୱାନ’ରେ ପୂର୍ଣ୍ଣତଃ ମୌଳିକ, ଅପ୍ରକାଶିତ ଲେଖାଗୁଡ଼ିକୁ ହିଁ କପିରଇଟର ବ୍ୟବସ୍ଥାରେ ଚୟନ କରଯାଏ । କୌଣସି ବେନାମୀ ଲେଖା ଉପରେ ଆମର କୌଣସି କର୍ତ୍ତବ୍ୟ / ଦାୟିତ୍ୱ ରହବ ନାହିଁ, ଯେତେବେଳଯାଏଁ କୌଣସି ସୂଚନା କମ୍ବା ନର୍ଦ୍ଦେଶ ଦଆଯାଇନାହିଁ । ଲେଖାରେ ଦଆଯାଇଥିବା ବଚାର ଲେଖକଙ୍କର ସମ୍ପୂର୍ଣ୍ଣ ନଜସ୍ୱ, ତାହା ଉପରେ ସମ୍ପାଦକ କମ୍ବା ପ୍ରକାଶକଙ୍କ ସହମତ ରହବ ବୋଲି କୌଣସି ଲଖିତ ନୟମ ନାହିଁ । ଯଦଓ ସମ୍ପାଦକ ସବୁ ଲେଖାକୁ ଭଲଭବରେ ପଢ଼ିବା ଏବଂ ବୁଝିବା ପରେ ହିଁ ପ୍ରକାଶିତ କରଥାନ୍ତି । ତଥାପି ଲେଖାର ଶତପ୍ରତଶତ ସତ୍ୟତାର ଦାବୀ କେବଳ ଲେଖକଙ୍କର । କୌଣସି ଲେଖାକୁ ନେଇ ଉଠିଥିବା ବବାଦର ଉତ୍ତରଦାୟିତ୍ୱ କେବଳ ଲେଖାର ମୂଳ ଲେଖକଙ୍କର, ଏଥିରେ ସମ୍ପାଦକ କମ୍ବା ପତ୍ରିକାର କୌଣସି ଉତ୍ତରଦାୟିତ୍ୱ ନାହିଁ ।

ଏହ ପତ୍ରକାର କୌଣସି ଅଂଶ ବା ଲେଖା ସମ୍ପାଦକଙ୍କ ଲଖିତ ଅନୁମତ ବନା ଅନ୍ୟ କୌଣସି ମାଧ୍ୟମ (ପତ୍ର ପତ୍ରକା / ଗଣ ମାଧ୍ୟମ / ସମ୍ବାଦପତ୍ର ଇତ୍ୟାଦ)ରେ ପ୍ରକାଶିତ କରବା ଏକ ଅପରାଧ । ଦୟାକର ଏହ ବଷୟ ପ୍ରତ ବଶେଷ ଧ୍ୟାନ ଦେବେ । ଲେଖକମାନେ ଚାହିଁଲେ ନଜ ଲେଖାର ପ୍ରଚାର ହେତୁ ସେମାନଙ୍କ ଲେଖା ପ୍ରକାଶିତ ହୋଇଥିବା ପୃଷ୍ଠାମାନଙ୍କ ପ୍ରତଛବ ଗଣମାଧ୍ୟମରେ / ଇଣ୍ଟରନେଟରେ ଦେଇ ପାରବେ ।

# ସମ୍ପାଦକୀୟ



ବର୍ଷ ୨୦୦୬ ଫେବୃଆରୀ ମାସର ଛଅ ତାରିଖ, ସରସ୍ୱତୀ ପୂଜାଦିନ ପ୍ରଥମ ଥର ପ୍ରକାଶିତ ହୋଇଥିଲା ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟ ଇ-ପତ୍ରିକା 'ଆହ୍ୱାନ' । ମାତ୍ର ଆଠ ପୃଷ୍ଠାର କ୍ଷୀଣ କଳେବର ନେଇ ପ୍ରକାଶିତ ଆହ୍ୱାନ ଏହି ମଧ୍ୟରେ ଦଶଗୋଟି ବର୍ଷ ନିରବଚ୍ଛିନ୍ନ ଭାବରେ ପ୍ରକାଶିତ ହୋଇ ଆସୁଛି, ଏବଂ ଦେଶ ବିଦେଶରେ ରହୁଥିବା ଅଗଣିତ ଓଡ଼ିଆଙ୍କୁ ପ୍ରତି ମାସରେ ଓଡ଼ିଆ ଭାଷାରେ ଏକ ପତ୍ରିକା ପଢ଼ିବାର ସୁଯୋଗ ଯୋଗାଇ ଦେଇଛି । ଅତ୍ୟନ୍ତ ଆନନ୍ଦର ବିଷୟ, ଦଶବର୍ଷରେ ପଦାର୍ପଣ କରିଥିବା ସତ୍ତ୍ୱେ ଏହି ପତ୍ରିକାର ମୌଳିକତା ସମ୍ପୂର୍ଣ୍ଣତଃ ବଜାୟ ରହିବା ସହିତ ଆଜିମଧ୍ୟ ପ୍ରତିଦିନ ନୂଆ ନୂଆ ପାଠକ ସୃଷ୍ଟି କରିବାରେ ସକ୍ଷମ ହୋଇଛି ଆହ୍ୱାନ । ଏବେ ମଧ୍ୟ ଯେତେବେଳେ ଜଣେ କେହି ଏହି ପତ୍ରିକା ବିଷୟରେ ଅନୁସନ୍ଧିତ୍ସୁ ହୋଇ ପ୍ରଶ୍ନ କରେ ଆପେ ଆପେ ମନଟା ଖୁସି ହୋଇଯାଏ । ଅବଶ୍ୟ ଦୀର୍ଘ ଦଶବର୍ଷର ପ୍ରକାଶନ ପରେ ମଧ୍ୟ ଅନେକେ ଏହା ବିଷୟରେ ଜାଣିନଥିବା ଜାଣିଲେ ମନ ଦୁଃଖ ହୁଏ । ତେବେ ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ରହୁଥିବା ଓଡ଼ିଆମାନେ ଇଣ୍ଟରନେଟ୍ ପରି ଗଣମାଧ୍ୟମ ବିଷୟରେ ସଚେତନ ହୋଇନାହାନ୍ତି, ସେମାନଙ୍କୁ ସଚେତନ କରିବା ଉଦ୍ଦେଶ୍ୟ ଯେ ଆମର ତାହାକୁ ଆମେ କେବେ ଭୁଲି ନାହୁଁ । ଫେସବୁକ୍ ହେଉ ଅବା ଟ୍ୱିଟର, ସବୁବେଳେ ଓଡ଼ିଆ ଭାଷା ସାହିତ୍ୟକୁ ପ୍ରାଧାନ୍ୟ ଦେଇ ଆସିଛୁ ଆମେ, 'ଆସ ଲେଖିବା, ପଢ଼ିବା ଓ ପଢ଼ାଇବା' ମନ୍ତ୍ରରେ ଆମେ ଦୀକ୍ଷିତ । ଆମେ ନୂଆ ଓଡ଼ିଆ ଭାଷାପ୍ରେମୀଙ୍କୁ ଜାଗ୍ରତ କରିବା ସହିତ ଓଡ଼ିଆ ଭାଷା ଜଗତକୁ ସମୃଦ୍ଧ କରିବାରେ ସହାୟକ ହୋଇପାରିଛୁ । ଅନେକ ବନ୍ଧୁ ଯେଉଁମାନେ ନୂଆ ନୂଆ ଓଡ଼ିଆରେ ଲେଖା ଲେଖି କରୁଥିଲେ ସେମାନଙ୍କୁ ଆମେ ପ୍ରୋତ୍ସାହିତ କରିଥିଲୁ

ଏବଂ ଏବେ ମଧ୍ୟ କରୁଛୁ, ସେମାନଙ୍କ ମଧ୍ୟରୁ ଅନେକେ ଏବେ ସ୍ୱୟଂ ପ୍ରତିଷ୍ଠିତ ସାହିତ୍ୟିକ ଭାବରେ ସମ୍ମାନିତ ହେଉଥିବା ଦେଖିଲେ ମନକୁ ଆନନ୍ଦ ମିଳେ ।

ଆମ ଭାଷା ସାହିତ୍ୟ ଯେ ଚୀର ଜାଜ୍ଜୁଲ୍ୟମାନ ଏବଂ ସମୃଦ୍ଧ ଏହା ସମସ୍ତେ ମାନିବେ । ଆମେ କେବଳ ଏହାକୁ ପ୍ରସାର କରିବା ଦିଗରେ ସହାୟତା କରିବା ପାଇଁ ପ୍ରକାଶିତ କରୁଛୁ ଆହ୍ୱାନ । ଆମ ଭାଷା ଓ ସାହିତ୍ୟର ଅନେକ ରଥୀ ମହାରଥୀ ଅଛନ୍ତି, ଯେଉଁମାନଙ୍କ ଦୟା ଏବଂ ଆଶୀର୍ବାଦରୁ ଆମ ଭାଷା ସମୃଦ୍ଧ ହୋଇଛି । ସେମାନେ ହିଁ ବାସ୍ତବିକ ଆମ ଭାଷା ସାହିତ୍ୟକୁ ନବଦିଗନ୍ତ ଦେଇଛନ୍ତି । ସେମାନଙ୍କ ଆଶୀର୍ବାଦରେ ଆମେ ନୂତନ ଲେଖକ ଲେଖିକା ମାନଙ୍କୁ ପ୍ରୋତ୍ସାହନ ଦେଇ ଭାଷା ଆନ୍ଦୋଳନକୁ ଆଉ କେଇ ପାଦ ଆଗକୁ ନେବାକୁ ଚେଷ୍ଟା କରୁଛୁ । ଆମେ ଯେଉଁ ପ୍ରଚେଷ୍ଟା କରୁଛୁ ତାହା ଆମେ ଆଜୀବନ ବଜାୟ ରଖିବୁ ଏବଂ ସମସ୍ତଙ୍କୁ ଏଥିରେ ସମ୍ପୃକ୍ତ କରିବୁ । ଆଜି ଆପଣ ଏହା ପଢୁଛନ୍ତି ଆସନ୍ତା କାଲି ଆହୁରି ଅନେକ ବନ୍ଧୁ ଏହାକୁ ପଢ଼ିବେ ଏବଂ ସେମାନେ ପୁଣି ନୂଆ ନୂଆ ବନ୍ଧୁଙ୍କୁ ଏହାକୁ ପଢ଼ିବାକୁ ପ୍ରେରିତ କରିବେ ବୋଲି ଆମେ ଆଶା କରୁଛୁ ।

ପୁଣି ଥରେ ସରସ୍ୱତୀ ପୂଜାର ସମୟ କିନ୍ତୁ ଦଶଟି ବସନ୍ତ ବିତିଯାଇଛି, ଆମେ ପୁଣି ଆପଣଙ୍କୁ ଭେଟି ଦେଉଛୁ ଆହ୍ୱାନ ଇ-ପତ୍ରିକାର ଆଉ ଏକ ସଂସ୍କରଣ । ଆଶା କରୁଛୁ ଆପଣମାନଙ୍କ ସହଭାଗୀତା ଆମ ସହ ପୂର୍ବପରି ବଜାୟ ରହିବ । ଆପଣ ନିଜ ଲେଖନୀର ମୂନକୁ ସୁଦୃଢ଼ କରି ଆମ ଭାଷାକୁ ସମୃଦ୍ଧି କରିବାରେ ଆମକୁ ସାହାଯ୍ୟ କରିବେ ଏବଂ ପାଠକପାଠିକା ମାନେ ନୂଆ ନୂଆ ପାଠକ ସୃଷ୍ଟି କରିବାରେ ଆମକୁ ସାହାଯ୍ୟ କରିବେ । ବିଗତ ସମସ୍ତ ସଂସ୍କରଣ ପରି ଚଳିତ ସଂସ୍କରଣ ମଧ୍ୟ ଆପଣଙ୍କୁ ଭଲ ଲାଗିବ ବୋଲି ଆଶା ।

ସଂପ୍ରତି ଫେବୃଆରୀ ମାସର ଦ୍ୱିତୀୟ ସପ୍ତାହ, ବିଶ୍ୱବ୍ୟାପୀ ଏହାକୁ ପ୍ରେମ ପାଇଁ ସମର୍ପିତ ଭାଲେଣ୍ଟାଇନ୍ ସପ୍ତାହ ଭାବରେ ପାଳିତ କରାଯାଉଛି । ମାସର ସାତ ତାରିଖରୁ ଆରମ୍ଭ ହୋଇଥିବା ଏହି ସପ୍ତାହ ଚଉଦ ତାରିଖ ପର୍ଯ୍ୟନ୍ତ ପାଳନ କରାଯାଉଛି, ବିଶେଷତଃ ଯୁବପୀଢ଼ିମାନଙ୍କ ମଧ୍ୟରେ ଏହାର ପାଳନକୁ ନେଇ ଦେଖାଯାଉଛି ଅହେତୁକ ଆକର୍ଷଣ ଓ ଉତ୍ସାହ । ଯଦିଓ ଏହି ଉତ୍ସବ ବିଦେଶାଗତ ଏବଂ ଆମ ସଂସ୍କୃତିର ବିପରୀତ ବୋଲି ଦର୍ଶାଇ କିଛି ରକ୍ଷଣଶୀଳ ଉଗ୍ରବାଦୀ ସଂଗଠନ ଏହା ବିରୋଧରେ

ଆନ୍ଦୋଳନାତ୍ମକ ପନ୍ଥା ଗ୍ରହଣ କରି ପ୍ରେମୀ ଯୁଗଳଙ୍କ କାର୍ଯ୍ୟକ୍ରମକୁ ପଣ୍ଡ କରିଦେବାକୁ ପଣ କରିଛନ୍ତି, ତଥାପି ଅନେକ ସ୍ଥାନରେ ଏହା ନିର୍ବିରୋଧ ପାଳିତ ହେଉଛି । ସହର ମାନଙ୍କର ବିଭିନ୍ନ ଦୋକାନ, ହୋଟେଲ୍, ରେସ୍ତୋରାଁ ଏବଂ ଗିଲାକ୍ସି ପାର୍ଲର୍ ମାନଙ୍କରେ ଏଥିପାଇଁ ବିଶେଷ ସାଜସଜ୍ଜା କରାଯାଉଛି । ଯୁବପୀଢ଼ିକୁ ଆକର୍ଷିତ କରିବା ପରି ଉପହାର, ପତ୍ର ଆଦି ଆଣି ବିକ୍ରୟ କରାଯାଉଛି । ଯଦିଓ ଏହି ଉତ୍ସବ ବିଦେଶାଗତ ତଥାପି ପ୍ରେମପାଇଁ ସମର୍ପିତ ହୋଇଥିବା ହେତୁ ଏହା ଆମ ମତରେ ଏକ ସ୍ୱାଗତଯୋଗ୍ୟ ଉତ୍ସବ ବୋଲି ମାନିନେବା ଉଚିତ । ଅବଶ୍ୟ ଏହି ଉତ୍ସବର ଆଳରେ କୌଣସି ପ୍ରକାରର ଉଚ୍ଛୃଙ୍ଖଳାତ୍ମକ କାର୍ଯ୍ୟକୁ ପ୍ରଶ୍ରୟ ଦେବା ଉଚିତ ନୁହେଁ । ସଂଯମତା ଆମ ସଂସ୍କୃତିର ମୂଳ ଦୁଆ ତାହାକୁ ଉପେକ୍ଷା କରି କୌଣସି ଉତ୍ସବ ପାଳନ ସର୍ବାଦୌ ଅଗ୍ରହଣୀୟ ।

ବିଗତ ମାସରେ ବିଶ୍ୱରେ ଅନେକ ପରିବର୍ତ୍ତନ ହୋଇଛି । ଆମେରିକୀୟ ମହାଦ୍ୱୀପରେ ଜିକା ଭୂତାଣୁ ଜନିତ ରୋଗର ମାତ୍ରା ବଢ଼ିଯିବା ପରେ ଅନ୍ୟୁନ ଗୋଟିଏ ଗୋଟି ଦେଶରେ ମହିଳାମାନଙ୍କୁ ଗର୍ଭଧାରଣ କରିବାକୁ ମନା କରାଯାଇଛି । ଏହା ଫଳରେ ମାନସିକସ୍ତରରେ ଦୁର୍ବଳ ଶିଶୁ ଜନ୍ମ ହେଉଥିବାର ଭୟକୁ ଆଖିଆଗରେ ରଖି ଏମିତି ନିଷ୍ପତି ନିଆଯାଇଛି । ଧିରେ ଧିରେ ଏହି ଭୂତାଣୁ ବିଶ୍ୱର ବିଭିନ୍ନ ଦେଶକୁ ବ୍ୟାପୀବାର ସୂଚନା ମିଳିଛି । ବିଗତ ସପ୍ତାହରେ ଏହି ଭୂତାଣୁ ଜନିତ ରୋଗ ଏକ ଚୀନର ରୋଗୀ ଦେହରେ ଦେଖା ଦେଇଥିବା, ସରକାର ଜଣାଇଛନ୍ତି । ଏହି ଭୂତାଣୁ ଜନିତ ରୋଗଠାରୁ ନିଜକୁ କେମିତି ସୁରକ୍ଷିତ ରଖିହେବ ସେହି ବିଷୟ ସମ୍ବଳିତ ଏକ ସୂଚନା ପୃଷ୍ଠା ଆହ୍ୱାନର ଚଳିତ ସଂସ୍କରଣରେ ପ୍ରକାଶିତ ହୋଇଛି ।

ପଞ୍ଜାବର ପଠାନକୋଟ୍ ବାୟୁସେନା ଘାଟି ଉପରେ ହୋଇଥିବା ଆକ୍ରମଣରେ ପାକିସ୍ତାନର ହାତ ଥିବାର ଯଥେଷ୍ଟ ପ୍ରମାଣ ଦିଆଯିବା ସତ୍ତ୍ୱେ, ଭାରତର ଚିରାଚରିତ ପ୍ରତିଦ୍ୱନ୍ଦୀ ପାକିସ୍ତାନ ସେ ସବୁକୁ ଖାରଜ କରିଦେଇ, ଏହି ଘଟଣାରେ ସଂପୃକ୍ତ ଥିବା ମୌଲାନା ମସୁଦ ଅଜହରକୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିଛି, ଏବଂ ମସୁଦ୍ ଏହାର ସୁଯୋଗ ନେଇ ଭାରତ ଉପରେ ପୁନଃଆକ୍ରମଣ କରିବାପାଇଁ ନିଜକୁ ପ୍ରସ୍ତୁତ କରୁଛି ବୋଲି ପାକିସ୍ତାନୀ ଗଣମାଧ୍ୟମକୁ ସୂଚେଇ ଦେଇଛି । ସେହିପରି ମୁମ୍ବାଇର ପ୍ରସିଦ୍ଧ ତାଜ ହୋଟେଲ ଉପରେ ହୋଇଥିବା ଆକ୍ରମଣର ଜଣେ ଅପରାଧୀ ଗିର୍ଡ୍ ହେଡଲି ବର୍ତ୍ତମାନ ଭାରତୀୟ

ନ୍ୟାୟିକ ବ୍ୟବସ୍ଥାକୁ ସହଯୋଗ କରି ଭାରତରେ ହୋଇଥିବା ଆକ୍ରମଣରେ ପାକିସ୍ତାନର ପ୍ରଚ୍ଛନ୍ନ ହାତ ଥିବା କଥା କହିଛି । ପାକିସ୍ତାନୀ ସେନାବାହିନୀ ଓ ଆଇଏସଆଇ ସଂସ୍ଥା କେମିତି ଆତଙ୍କବାଦୀଙ୍କୁ ସହଯୋଗ କରୁଛି ସେ ସବୁ ବିଷୟରେ ବିଶେଷ ସୂଚନା ଦେଉଛି । ତଥାପି ପାକିସ୍ତାନ ଏ ସବୁ ଆରୋପକୁ ଖଣ୍ଡନ କରୁଛି । ସମୟ ଆସିଛି ଭାରତୀୟ ରାଜନେତାମାନେ ସୌହାର୍ଦ୍ଦ୍ୟର ବାତାବରଣ ବିଷୟରେ ଚିନ୍ତା କରିବା ସହ କୌଣସି ବିହିତ ପଦକ୍ଷେପ ନେବା କଥା ଚିନ୍ତା କରିବା ଉଚିତ ହୋଇଛି ।

ଭାରତର ସଶକ୍ତ ସୀମା ସୁରକ୍ଷାବଳ ଆମ ଦେଶକୁ ବିଦେଶୀ ଶକ୍ତିମାନଙ୍କ ଠାରୁ ରକ୍ଷାକରିବା ପାଇଁ ଅତି କଠୋରତମ ବାତାବରଣରେ ମଧ୍ୟ କାମ କରି ଆସୁଛନ୍ତି । ଉତ୍ତରରେ ହିମାଳୟକୁ ସୁରକ୍ଷାବାହିନୀ ଅନେକ ଉଚ୍ଚରେ ବିଶ୍ୱର ସର୍ବୋଚ୍ଚ ରଣଭୂମି ସିଆଚୀନ୍ ଗ୍ଲେସିୟରରେ ରହି ଦେଶକୁ ସୁରକ୍ଷା ଯୋଗାଇଛନ୍ତି । ସେହି ସ୍ଥାନରେ ବିଗତ ସପ୍ତାହରେ ହୋଇଥିବା ହିମସ୍ଖଳନରେ ବରଫ ତଳେ ଚାପି ହୋଇ ଦଶଜଣ ସୈନିକ ପ୍ରାଣ ହରାଇଥିବା ଖବର ପାଇବାପରେ ଦେଶରେ ଶୋକର ବାତାବରଣ ଦେଖା ଦେଇଥିଲା । ହେଲେ ଛଅ ଦିନ ଧରି ପଚିଶି ଫୁଟ ବରଫର ଚଦର ତଳେ ମଧ୍ୟ ବଞ୍ଚିରହିଥିବା ଜଣେ ସୈନିକ ହନୁମନ୍ଥାପାକୁ ଦୁଇ ଦିନତଳେ ସୁରକ୍ଷାକର୍ମୀମାନେ ଉଦ୍ଧାର କରିବାପରେ ଏହା ଏକ ବିସ୍ମୟ ବୋଲି ଅନେକ ବିବେଚନା କରିଥିଲେ । ଦିଲ୍ଲୀସ୍ଥିତ ସୁରକ୍ଷାବଳଙ୍କ ପାଇଁ ଉଦ୍ଦିଷ୍ଟ ଆର୍ ଆର୍ ହସପିଟାଲରେ ହନୁମନ୍ଥପାଙ୍କ ଚିକିତ୍ସା ହେଉଥିଲା । ଆମ ପ୍ରଧାନମନ୍ତ୍ରୀ ସ୍ୱୟଂ ସୈନିକଙ୍କୁ ଦେଖା କରିବାପାଇଁ ବିନା କୌଣସି ସୁରକ୍ଷାବଳୟରେ ହସପିଟାଲକୁ ପହଞ୍ଚିଯାଇଥିଲେ । ଦୁର୍ଭାଗ୍ୟର ବିଷୟ ଛଅଦିନ କାଳ ବରଫତଳେ ଚାପି ହୋଇ ବଞ୍ଚିଥିବା ହନୁମନ୍ଥାପା ଆଜି ପୂର୍ବାହ୍ନରେ ଇହଧାମ ତ୍ୟାଗ କରିଥିଲେ । ବରଫତଳେ ରହିବା ଯୋଗୁଁ ତାଙ୍କ ଶରୀର ଅନେକ ଅଙ୍ଗ କାମ କରୁନଥିଲା, ତାଙ୍କୁ ବଞ୍ଚାଇ ରଖିବାର ସମସ୍ତ ପ୍ରୟାସ ବିଫଳ ହୋଇଥିଲା ।

ବିଗତ ସପ୍ତାହରେ ଓଡ଼ିଶାପାଇଁ ଥିଲା ଏକ ଆନନ୍ଦର ସମୟ । ପାରାଦ୍ୱୀପଠାରେ ଭାରତର ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଏକ ବିଶାଳ ଇଣ୍ଡଷ୍ଟ୍ରିଆଲ୍ କମ୍ପ୍ଲେକ୍ସର ଉଦଘାଟନ ହୋଇଥିଲା ଯାହା ଦ୍ୱାରା ଓଡ଼ିଶାର ଅର୍ଥନୀତି ବହୁତ ଭାବରେ ପ୍ରଭାବିତ ହେବ ଏବଂ ଏହାଦ୍ୱାରା ରାଜ୍ୟର ଆୟ ବୃଦ୍ଧିହେବା ସହ ଲୋକଙ୍କୁ ରୋଜଗାର ଆଦି ମିଳିବ ବୋଲି ଘୋଷଣା କରାଯାଇଥିଲା । ଏହି କାର୍ଯ୍ୟକ୍ରମରେ ଯୋଗ

ଦେବାପାଇଁ ଆସିଥିବା ପ୍ରଧାନମନ୍ତ୍ରୀ ଶ୍ରୀ ମୋଦୀ ପୁରୀ ଶ୍ରୀମନ୍ଦିର ଯାଇ ମହାପ୍ରଭୁ ଶ୍ରୀ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଦର୍ଶନ କରିଥିଲେ ଏବଂ ଲକ୍ଷ୍ମୀ ମନ୍ଦିରରେ କିଛି ସମୟ ବିତାଇବାପରେ ଅନ୍ୟ କାର୍ଯ୍ୟକ୍ରମ ପାଇଁ ଆଗେଇ ଯାଇଥିଲେ । ପାରାଦ୍ୱୀପଠାରେ ଉଦଘାଟିତ ଅଏଲ୍ ରିଫାଇନାରୀ କାର୍ଯ୍ୟକ୍ଷମ ହେଲେ ୨୦୨୨ ମସିହା ସୁଦ୍ଧା ୧୦% ତୈଳ ଆମଦାନୀ ହ୍ରାସ ହୋଇପାରିବ ବୋଲି ଜଣାପଡ଼ିଛି । ଏହା ସହିତ ଏଠାରେ ଏକ ସାର କାରଖାନା ନିର୍ମାଣ ହେବ, ଏବଂ ଏହା ସମ୍ପର୍କିତ ଅନେକ ଛୋଟ ବଡ଼ ଇଣ୍ଡଷ୍ଟ୍ରି ମଧ୍ୟ ଗଠନ ହେବ ବୋଲି ଜଣାଯାଇଛି ।

ଅନେକ ଘଟଣା, ଦୁର୍ଘଟଣାର ଦିନ ସବୁ ଗୋଟିଏ ଗୋଟିଏ କରି ବିତି ଯାଉଛି । ଭଲମନ୍ଦ ସବୁ ହେଉଛି । ସମ୍ବାଦବହୁଳ ସମୟରେ ବସନ୍ତ ପଞ୍ଚମୀର ପବିତ୍ର ଅବସରରେ ଆପଣମାନଙ୍କୁ ଭେଟି ଦେଉଛି ଚଳିତ ମାସର ଆହ୍ୱାନ ଇ-ପତ୍ରିକା ।

ଧନ୍ୟବାଦ

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

# ଚଳିତ ସଂସ୍କରଣରେ...

# ଗଣପତି ବନ୍ଦନା

ଶ୍ରୀ ପ୍ରବୋଧ ଚନ୍ଦ୍ର ମୁଦ୍ରା



(ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନ ସ୍ୱାମୀ ସ୍ୱରରେ )

ନମୋସ୍ତୁତେ ଗଣପତି ପ୍ରଭୁ ଗଜାନନ
ଅଗ୍ରପୂଜ୍ୟ ବିନାୟକ ବିଘ୍ନବିନାଶନ
ପ୍ରଭୁ ଶ୍ରେଷ୍ଠ ବିଦ୍ୟାଦାତା
ଜ୍ଞାନ, ବୁଦ୍ଧି ପ୍ରଦାୟକ, ସର୍ବସିଦ୍ଧିଦାତା ।୧।

ବକ୍ରତୁଣ୍ଡ, ମହାକାୟ ପ୍ରଭୁ ଏକଦନ୍ତ
ଗଜବକ୍ତ୍ର ଶ୍ରୀଗଣେଶ ଦେବ ଉମାସୁତ
ପ୍ରଭୁ ସର୍ବମୟ କର୍ତ୍ତା
ସକଳ କାର୍ଯ୍ୟ ନିର୍ବିଘ୍ନ କରନ୍ତି ସର୍ବଦା ।୨।

ସୂର୍ଯ୍ୟକୋଟି ସମପ୍ରଭ ଅଟେ ତୁମ ଜ୍ୟୋତି
ଅଖିଳ ବ୍ରହ୍ମାଣ୍ଡ ନାଥ ତୁମେ ସର୍ବଶକ୍ତି
ପ୍ରଭୁ କାର୍ତ୍ତିକ ଅବର
ଖର୍ବ ଓ ସ୍ଥୂଳ ଶରୀର ତୁମେ ଲମ୍ବୋଦର ।୩।

ଗଜେନ୍ଦ୍ର ବଦନ ପ୍ରଭୁ ତୁମେ ଧୂମ୍ରବର୍ଣ୍ଣ
ପ୍ରସନ୍ନ ବଦନ ଦୃଶ୍ୟ, ହେ ଦୁଃଖନାଶନ
ବିଘ୍ନେଶ୍ୱର ବିଘ୍ନହର୍ତ୍ତା
ସକଳ ପ୍ରାଣୀର ତୁମେ ଭଗ୍ୟ ବିଧାତା ।୪।

ଭଲେ ଚନ୍ଦ୍ର ବିରଜିତ ଅତି ମନୋହର
ବିକଟ ରୂପରେ ତୁମେ ଦୁଷ୍ଟଙ୍କୁ ସଂହାର

ପ୍ରଭୁ ଭୁବନମୋହନ
ସାଧୁ, ସନ୍ଥ କରୁଥାନ୍ତି ତୁମର ବନ୍ଦନ ।୫।
କୃଷ୍ଣପିଙ୍ଗଳ ନେତ୍ର ଦିବ୍ୟ ଶୋଭିବନ
ବିବିଧ ରୂପରେ ପ୍ରଭୁ ତୁମେ ପଞ୍ଚାନନ
ପ୍ରଭୁ ସଙ୍କଟ ମୋଚନ
ସକଳ ପ୍ରାଣୀଙ୍କୁ ଦୟାକର ଅନୁକ୍ଷଣ ।୬।
ପାଶ - ଅଙ୍କୁଶ - ପୁସ୍ତକ କରିଛ ଧାରଣ
ମୋଦକ ପ୍ରିୟ ଠାକୁର ଅତି ଦୟାବାନ
ଗୌରୀ ମାନସ ନନ୍ଦନ
ଗାଣପତ୍ୟଙ୍କର ତୁମେ ଅଟ ଭଗବାନ ।୭।
ବୁଦ୍ଧି ପରୀକ୍ଷାରେ ଜ୍ଞାନ କଲ ପ୍ରଦର୍ଶନ
ପିତୃ ଚତୁଃପାର୍ଶ୍ୱେ ପ୍ରଭୁ କଲ ପ୍ରଦକ୍ଷିଣ
ହୋଇ ମୂଷିକ ସବାର
ପିତା ଯେ ଅଟନ୍ତି ସ୍ୱୟଂ ବ୍ରହ୍ମାଣ୍ଡ ଠାକୁର ।୮।
ବକ୍ତା ରୂପେ ବ୍ୟାସ ଶ୍ଳୋକ କରିଲେ ଗାୟନ
ଶୁଣି  ଲେଖିଗଲ ମହାଭାରତ ପୁରାଣ
ଦିବ୍ୟ ଜ୍ଞାନର ନିଧାନ
ଜଗତରେ  ସର୍ବପୂଜ୍ୟ ହୋଇଲ ଆପଣ ।୯।
ତବ ଶ୍ରୀଚରଣାମ୍ବୁଜେ କରେ ପ୍ରଣିପାତ
ଅଭୟ ମୁଦ୍ରାରେ ପ୍ରଭୁ କର ଆଶୀର୍ବାଦ
ମୋର ବିନୀତ ପ୍ରାର୍ଥନା
ପୂର୍ଣ୍ଣ କର ସମସ୍ତଙ୍କ ମନର କାମନା ।୧୦।

ସାଙ୍କୁଡ଼ା, ସୁମଣ୍ଡଳ, ଗଞ୍ଜାମ ଜିଲ୍ଲା, ଓଡ଼ିଶା ଫୋନ୍ : ୭୮୯୪୯୧୬୧୩୧

# ହେ ଜଗନ୍ନାଥ

ଅନାମ ଚରଣ ସାହୁ



ତୋ ରଂଗଅଧରେ ହସିଦେଲେ ଥରେ
ଦୁଃଖ ମୁହିଁଯାଏ ଭୁଲ,
ପଥ ବହୁଦୂର ଜଗତ ଠାକୁର
ନ ପାରଇ ମୁହିଁ ଗ୍ଭଲ ।

ଦୟା ହେବ ତୋର ଲାଗିଯିବ ଡୋର
ଆକର୍ଷି ନେବୁ ତୁ ମୋତେ,
ହେ ଚକାନୟନ ଦେଖିବ ବଦନ
ସପନ ଦେଖୁଛ କେତେ ।

ଶରଧା ବାଲରେ ଗଡ଼ି ମୁହିଁଥରେ
ପ୍ରେମରେ ତୋହର ମଜ,
ନରେନ୍ଦ୍ର ଜଳରେ ଗାଧୋଇବ ଥରେ
ଭାବରେ ତୋହର ହଜ ।

ଅବଢ଼ା ତୋହର କରିବ ଆହାର
ଗାଇବ ତୋହର ଜୟ,
ପତିତପାବନ କରିବ ଦର୍ଶନ
ପାପ ମୋର ହେବ କ୍ଷୟ ।

ଦେଖି ମହୋଦଧି ପାଇବ ମୁଁ ସିଦ୍ଧି
ପାଇବ ଯେ ପୂଣ୍ୟଫଳ,
ସଂସାରେ ଜୀଇଁବ ଶ୍ରୀମୁଖ ଦେଖିବ
କଟିଯିବ ମୋର ବେଳ ।

ଗରୁଡ଼ ପଛରେ ସନ୍ଧ୍ୟାଦୀପ ବେଳେ
ଭକତ ନୈବେଦ୍ୟ ଦେଇ,
ପୂଜିବ ପୟର ଆଖି ନୀରେ ମୋର
ଦୟା କରିଥିବ ସାଇଁ ।

ବଭୁତପୁର, କାକଟପୁର, ପୁରୀ
ଓଡ଼ିଶା

# ଡାଇବେଟିସ୍- ୪

ଅନୁପମ୍ ବେହେରା



ତୋ ମିଠା ମିଠା କଥା ଶୁଣି ଶୁଣି ମୋତେ,
ହେଇଗଲା ଡାଇବେଟିସି ।
ଆକାଉଣ୍ଟ ଖୋଲିବାକୁ କହୁଥିଲୁ,
ମୋ ଦୁଆର ମୁହଁକୁ ଆସି...
ଅଳ୍ପ ରଖିଲେ ବହୁତ ମିଳିବ,
କହିଲୁ ମୋ ପାଖରେ ବସି...
ଅଧିକ ପାଇବା ଲାଳସାରେ ମୁଁ,
ତୋ କଥାରେ ଗଲି ଫସି ॥ 1

ତୋ ମିଠା ମିଠା କଥା ଶୁଣି ଶୁଣି ମୋତେ,
ହେଇଗଲା ଡାଇବେଟିସି ।
ତୋ ହାତରେ ଟେକିଦେଲି ମୋର,
ଝାଳବୁହା ଜମାରାଶି...
ମୋ ବିଶ୍ୱାସକୁ ପାଥେୟ କରି,
ତୁ ମୋର ସବୁକିଛି ନେଲୁ ଶୋଷି...
କିଛିଦିନ ଯାଏ ଦେଖାଦେଇ ପରେ,

ପବନରେ ଗଲୁ ମିଶି ॥ 2

ତୋ ମିଠା ମିଠା କଥା ଶୁଣି ଶୁଣି ମୋତେ,
ହେଇଗଲା୍ ଡାଇବେଟିସି ।
ଟିଭି ପେପରରେ ତୋ କଥା ପଢ଼ି,
ମୁଁ ମଥାରେ ହାତଦେଇ ଗଲି ବସି...
ମୋ ଘରେ ଚୁଲି ଜଳୁନଥିଲା,
ତୁ କରୁଥିଲୁ ମଜଲିସି...
ଦିନବେଳଟାରେ କଳାକନା ବୁଲେଇଲୁ,
ମୋ ମଥାରେ ଚୁନ ଲେସି...
ସର୍ବସ୍ୱାନ୍ତ ହୋଇଗଲି ମୁଁ,
ତୋ ଚକ୍କଣ କଥାରେ ଫସି ॥ 3

ତୋ ମିଠା ମିଠା କଥା ଶୁଣି ଶୁଣି ମୋତେ,
ହେଇଗଲା୍ ଡାଇବେଟିସି ।

# ତିନୋଟି କୁନି କବିତା

ଅନୁପମ ବେହେରା



୧. ପଥରରେ ତିଆରି ତୋ ନରମ ହୃଦୟଟା,
ସବୁ ଘାତ ପ୍ରତିଘାତ ସହିଯାଏ ।
କାଚରେ ତିଆରି ମୋ ଟାଣ ହୃଦୟ,
ଅଳ୍ପ ଆଘାତରେ ଭାଙ୍ଗି ଚୁନାହୁଏ ॥

୨. ମୋର ଅସଂଖ୍ୟ ପ୍ରଶ୍ନ ବାଣରେ,
ଘାଇଲା ହେଲାପରେ...
"ମୋତେ ସନ୍ଦେହ କରୁଛ କି ?"
ବୋଲି ପଚାରିଲା ଯେବେ ସେ ଲୁହ ଛଳଛଳ ଆଖିରେ ।
ମୋ ଅନ୍ତର୍ଆତ୍ମାର ମୁହଁ ବି,
ଲାଜରେ ପୋତିହେଇଗଲା...
ତା'ର ଗୋଟିଏ ଅମୋଘ ପ୍ରଶ୍ନର ପ୍ରହାରରେ ॥

୩. ନୂଆ ବର୍ଷର ନୂଆ ସକାଳ ଆସିଥିଲା ।
ଧୂସର କିରଣ ନେଇ...
ସମୟର ବଢୁଥିଲା ବୟସ,
ପୃଥିବୀର କମୁଥିଲା ଆୟୁଷ ।
ନିର୍ବୋଧ ମଣିଷ ମସ୍‌ଗୁଲ୍ ଥିଲା,
ଅବାସ୍ତବ ସ୍ୱପ୍ନ ଦୁନିଆରେ...
ସମଗ୍ର ଜୀବସତ୍ତା ଲାଗିଥିଲା,
ତା କୃତକର୍ମର ଋଣ ପରିଶୋଧରେ ॥

# ସୁଜାତା ପାଇଁ ପଦେ

ଅସିତ କୁମାର ସ୍ୱାଇଁ



ସୁଦିନରେ ହୋଇଲାନି ଦେଖା ପୁଣି ଥରେ,
ସୃଷ୍ଟି କଲା ଦୁଃସମ୍ବାଦ ବେଦନା ଆତ୍ମାରେ ।
ବ୍ୟାକୁଳିତ କଲା ମୋର କୋହଭରା ମନ,
ବଜ୍ର ପଡ଼ିଗଲା ଜାଣି ଘଟାଇ ଦୁର୍ଦ୍ଦିନ ।

ଯାଗା - କାଳ ବଦଳିଛି ବଦଳିନି ମନ,
କାଲି ପରି ଲାଗୁଅଛି ସେଇ ପିଲାଦିନ ।
ପଡ଼ିଆରେ ଖେଳୁଥିଲେ ସାଙ୍ଗସାଥୀ ହେଇ,
ଡିଆଁ ଡେଇଁ କରୁଥିଲେ ପେଟେ ଖାଇ ପିଇ ।

ତା'ର କିଛିଦିନ ପରେ ପାଠ ପଢ଼ିଗଲେ,
ଗଣିତର ସୂତ୍ର ସବୁ କଷ୍ଟରେ ବୁଝିଲେ ।
ଇତିହାସ - ଭୂଗୋଳକୁ ମୁଣ୍ଡରେ ଭରିଲେ,
ସାହିତ୍ୟର ରୋମାଞ୍ଚକୁ ସ୍ୱପ୍ନରେ ଜିଇଁଲେ ।

ମିତପଣ ଜାରିଥିଲା - ଅଛି, ଥିଲା, ଥିବ

ହସଖୁସି ହେଇ ହେଇ ବିତଲା ଶୈଶବ ।
ପଢ଼ାପାଇଁ ବଦଳଲା ଠିକଣା ଆମର,
ପୂଜାଛୁଟି ପୁଣି ଡାକେ ଉମରକୋଟର ।

ଶ୍ରମକ୍ଷେତ୍ରେ ଭାବୁଥିଲ ଏଇଥର ଯିବ,
ବନ୍ଧୁତାର କଥାସବୁ ଦୋହରାଇ ଦେବ ।
ମୋ ଛୁଆମାନଙ୍କ ପାଇଁ ଆଶିଷ ମାଗିବ,
ତୁମର ପିଲାଙ୍କ ଲାଗି ପ୍ରାର୍ଥନା କରିବ ।

ସ୍ୱପ୍ନ ସବୁ ଚୁର୍‌ମାର୍ ଏପରି ହୋଇଲା,
ସେଠି ହେଲା ଦୁର୍ଘଟଣା ଏଠି ବ୍ୟଥା ହେଲା ।
ଦେହ ତୁମ ଗଳିଗଲା ବହୁକଷ୍ଟ ସହି,
ତୁମେ ସତ୍‌ପଥେ ଯାଅ ଗୁହାରୁଛି ମୁହିଁ ।

# ଅଭିଳାଷ

ପ୍ରତିଭା ପ୍ରିୟଦର୍ଶିନୀ



ଅଯୁତ ଜନ୍ମର ସମ୍ପର୍କ ଆମର
ନୂଆ ନୁହେଁ କାହାପାଇଁ,
ପୂର୍ଣ୍ଣତାର ଖିଅ ଖୋଜି ଖୋଜି
ଥକିଯାଏ ଧାଇଁ ଧାଇଁ ।

ମାନ, ଅଭିମାନ, ମିଳନ, ବିରହ
ଯେତେ ଆମ ରାଗ ରୁଷା,
ଆଖିରେ ଆଖିରେ କହିଯାଏ ପୁଣି
ଅବ୍ୟକ୍ତ ଭାବର ଅକୁହା ଭାଷା ।

ତୁମେ ସୁଖୀ ହେବ, ଖୁସିରେ ରହିବ
ସେହିଥିରେ ମୋ ପୂର୍ଣତା,
କରିବାକୁ ତୁମ ପଥ ଆଲୋକିତ
ଜାଳିପାରେ ନିଜେ, ନିଜ ଚିତା ।

ଜନ୍ମ ଜନ୍ମାନ୍ତରେ ତୁମକୁ ପାଇବି
ଏକମାତ୍ର ଏଇ ଅଭିଳାଷ,
ନିରାମୟ ତୁମ ଜୀବନ ପାଇଁକି
ଭେଟିଦେବି ମୋର ବଳକା ଆୟୁଷ ।

ପ୍ରସିଦ୍ଧି, ସମୃଦ୍ଧି ପାଇ ଧନମୋର
ହୁଅ ତୁମେ ସଦା ଚିରଂଜିବୀ,
ତୁମ ହାତୁ ପିନ୍ଧିବାକୁ ଶଂଖା ଓ ସିନ୍ଦୁର
ବାରମ୍ବାର ଜନ୍ମ ନେଉଥିବି ।

# ନର୍ଭୟା

ସମୀକ୍ଷା ଦାସ (ଦେବୀଶ୍ରୀ)



ସେଦନ ...

କମ୍ପୁଛ ଆଜ ଦଲ୍ଲୀ ପ୍ରଶାସନ

ନାରୀ ନର୍ଯ୍ୟାତନା ହେବ ପ୍ରଶମନ

ଗ୍ବରଆଡ଼େ ଖାଲ ଜନତାଙ୍କ ଭଡ଼

ବକ୍ଷୋଭ, ପୋଲସର ଲ୍ଠିମାଡ଼

ନର୍ଭୟାର ନଆଁ ଲ୍ଗିଛ ଦଲ୍ଲୀରେ

ସେ ନଆଁ ବ୍ୟାପିଛ ସହର ପଲ୍ଲୀରେ

ନାରୀହାତେ ଆଜ ଶାସନର ଡୋର

ତଥାପି ଥମୁନ ନାରୀ ଅତ୍ୟାଗ୍ବର

ପଶୁ ପାଲଟିଛ ସମାଜ ଏବେ ତ

ଗଜରସ୍ତା ମଧ ନୁହେଁ ସୁରକ୍ଷିତ

ବସରେ ହେଉଛ ଗଣ ବଳାତ୍କାର

ତଥାପି ନରବ ଶୀଲ୍ ସରକାର

ବପ୍ଲବର ବହ୍ନଶିଖା ତେଜେ ଆଜ

ନର୍ଭୟାକୁ ନ୍ୟାୟ ନଶ୍ଚେ ଦେବେ ଖୋଜ ।

ହେଲେ ଆଜ ...

ଯେଉଁମାନେ ସାଜଥିଲେ କର୍ଣ୍ଣଧାର

ସେ ଦନର ସେହ ମହା ବପ୍ଳବର

ସେମାନଙ୍କ ହାତେ ସରକାର ଆଜ

ନର୍ଭୟାକୁ ମନୁ ଦେଇଛନ୍ତ ତେଜ

ନର୍ଭୟା ନଆଁକୁ କର ନଜ ସିଢ଼ି

ଦଲ୍ଲୀ ସିଂହାସନପରେ ଗଲେ ଚଢ଼ି

ନର୍ଭୟାର ହତ୍ୟାକାରୀ ପିଶାଚକୁ

ଦେଉଛନ୍ତ ଅନୁଦାନ ସେ ନୀଚକୁ

ଧନ୍ୟ ରାଜନେତା ଧନ୍ୟ ରାଜନୀତ

ଧନ୍ୟ ତୁମ ମାନ ନାରୀ ଜାତ ପ୍ରତ

ସରକାର ସିନା ବଦଳ ଯାଉଛ

ନାରୀ ଅତ୍ୟାଚ଼ାର ସେମିତ ହେଉଛ

ଯେବେ ହେବ ଏଠି ନାରୀ ବନ୍ଦନୀୟା

ସେହଦନ ଶାନ୍ତ ପାଇବ ନର୍ଭୟା ।

# ସମ୍ପର୍କ ସ୍ୱାମୀ ସ୍ତ୍ରୀ ଓ ମା'ପୁଅର

ପ୍ରଶାନ୍ତ କୁମାର ନାଥ



ବୁଢ଼ାଟିଏ ଦିନେ କାନ୍ଦୁଥିଲା ବସି
ଗୁମୁର ଗୁମୁର ହୋଇ,
ପଚ୍ଚରିଲି ଯାଇ ପାଖକୁ ତାଙ୍କର
କାନ୍ଦୁଛ କଅଣ ପାଇଁ ।
କହିଲା ସ୍ତ୍ରୀ ମୋର ବେମାର ପଡ଼ିଛି
ପାରୁନି ସେ ଉଠିବସି,
କହିଲି ପୁଅକୁ ଡାକ୍ତର ଡାକୁନୁ
ଯାଇଛି ଆଣିବ ଖାସି ।
ଶଳା ତା'ର ଆଜ ଘରକୁ ଆସୁଛି
ଯୋଗାଡ଼ରେ ଅଛି ସିଏ,
ମାଆକୁ ଡାକ୍ତର କିଏ ଦେଖାଇବ
ମନ କୁ ମୋ ପାପ ଛୁଏଁ ।
ବଳ ନାହିଁ ଆଉ ହାତରେ ମୋହର
ପାରୁନି ତାକୁ ମୁଁ ନେଇ,
ଟଙ୍କା ପଇସା ବି ନାହିଁ ତ ପାଖରେ
ବୁଦ୍ଧି ବାଟ ଦିଶୁନାହିଁ ।
କେତେ ସେବା କରୁଥିବା ସ୍ତ୍ରୀ ମୋହର
ଆଜ ସେ ପଡ଼ିଛି ରୋଗେ,
ପାରୁନାହିଁ କିଛି କରି ତାହା ପାଇଁ

ନାହିଁ ତାହା ମୋର ଭାଗ୍ୟେ ।
ଭଲ ପାଇବା ଦେଖି ସେ ବୃଦ୍ଧର
ବହୁତ ମୁଁ ଖୁସି ହେଲି,
କଣ ଯେ ସାନ୍ତ୍ୱନା ଦେବ ନ ଜାଣିମୁଁ
ମନେ ମନେ ଚିନ୍ତା କଲି ।
କହିଲି ଅଜା ହେ କିଛି ହେବ ନାହିଁ
ପୋଛି ଦିଅ ଆଖି ଲୁହ,
ତାଙ୍କ ପ୍ରତି ତୁମ ଭଲପାଇବା ହିଁ
ତାଙ୍କୁ ତ ହେବ ସହାୟ ।
ସେହି ପୁଅ କଥା ଭାବିଲି ଯେବେ ମୁଁ
ମୋତେ ଭାରି କଷ୍ଟ ହେଲା,
ପୁଅ ଜନ୍ମକରି ସେଇ ମାଆ ସତେ
କଣ ପାପ କରିଥିଲା ?
ନିଦ ହେଲାନାହିଁ ସେଦିନ ରାତିରେ
ଭାବିଲି ତାହାର କଥା,
ସବୁ ପୁଅଙ୍କୁ ଯେ ଅନୁରୋଧ ମୋର
ବୁଝନ୍ତୁ ମାଆ ମମତା ।

ସୁନ୍ଦରପୁର, ଉତ୍ତରକୂଳ ହାଟ, ପ୍ରୀତିପୁର
ଯାଜପୁର, ଓଡ଼ିଶା
ମୋବାଇଲ୍ - ୦୮୮୯୨୩୦୧୧୪୩

# ଜୀବନ ଜୁଆର

ପ୍ରଭାତ ଗୁରୁ



ଜୀବନ ଜୁଆର ସମୟ ନଈରେ
ଉଠୁଥାଏ ପଡୁଥାଏ,
ସୁଖ ଦୁଃଖ ପର ଦୁଇଟି ପସର
ଭାଗେ ଭାଗେ ମିଳୁଥାଏ ।

ସୁଖ ଆସେ ଜୀବନେ କ୍ଷଣିକ ପାଇଁ ଯେ
ଦୁଃଖ ଯେ ଦରଦ ବନ୍ଧୁ,
ଦୁଃଖୀ ଜୀବନରେ ସୁଖ ଯେମିତକା
ସତେ ଅବା ସାତ ସିନ୍ଧୁ ।

ପାପ ଓ ପୂଣ୍ୟର ହିସାବ କରିବ
ତଉଲିବ ନିକିତିରେ,
ଧନୀ କି ଗରିବ ବୁଝିବନି ସେହି
ଯାହା ଥିବ ତୋ ଭାଗ୍ୟରେ ।

ସରଗେ ନୁହେଁ କି ନରକରେ ନୁହେଁ
ଏଇଠୁ ପାଇବୁ ଫଳ,
ଯେଉଁଠି ଜନମ ସେଇଠି ମରଣ
ମାଟି ଏକା ମା' କୋଳ ।

# ସାଧାରଣତନ୍ତ୍ର ଦିବସ

ଶ୍ରୀ ହିମାଂଶୁ ଶେଖର ବାରିକ୍



ଆମର ପୂର୍ବଜ ଦେଲେ ପ୍ରାଣ ବଳି
ବୋହିଲା ଶୋଣିତ ନଦୀସ୍ରୋତ ଭଳି,
ଅବନତ କଲେ ନାହିଁ ତାଙ୍କ ମଥା
ଆଣିଦେଲେ ଆମ ପାଇଁ ସ୍ୱାଧୀନତା ।।

ସ୍ୱାଧୀନ ଭାବେ କରିବାକୁ ଶାସନ
ଗଢିଲେ ସେମାନେ ନୂଆ ସମ୍ବିଧାନ,
ଭାରତ ହୋଇଲା ଗଣତନ୍ତ୍ର ରାଷ୍ଟ୍ର
ପାଳିଲେ ଦିବସ ସାଧାରଣ ତନ୍ତ୍ର ।।

ଥିଲା ଲକ୍ଷ୍ୟ ଆମ ହେବୁ ସାମ୍ୟବାଦ
ଧର୍ମନିରପେକ୍ଷ ମୁକ୍ତ ମତବାଦ,
ଦୂରୀଭୂତ ହେବ ଶୋଷଣ କଷଣ
ଶାନ୍ତିରେ ରହିବେ ଦେଶବାସୀଗଣ ।।

କୁଶାସନ ଯିବ ଦେଶୁ ଅପସରି
ସମ୍ମାନିତ ହେବେ ଭାରତୀୟ ନାରୀ,
ବାଳଶ୍ରମ ପ୍ରଥା ହୋଇବ ଉଚ୍ଛେଦ
କର୍ମକ୍ଷେତ୍ରେ ସର୍ବେ ହୋଇବେ ନିଯୁକ୍ତ ।।

ଆଶା ରହିଗଲା ଆଶାରେ ଆମର
ବିକାଶର ନାମେ କରୁଛୁ ଚିତ୍କାର,
ପୁଞ୍ଜିପତି ହାତେ ହେଉଛୁ ଶାସିତ
ଗୋଲାମଗିରିରେ ହୋଇ କବଳିତ ।।

ନାରୀ ନିର୍ଯ୍ୟାତନା ଗରିବ କଷଣ
ବେକାର ସମାସ୍ୟା କୃଷକ ମାରଣ,
ନିଶା ବୃଦ୍ଧି କରି ରାଜସ୍ୱ ଅର୍ଜନ
ଭୋଟ ପାଇଁ ସାମ୍ପ୍ରଦାୟିକ ପୋଷଣ ।।

ପରିଣାମେ ଯୁବା ହୁଏ ପଥଚ୍ୟୁତ
ଅବଲମ୍ବନ କରେ ସନ୍ତ୍ରାସବାଦ,
ବିଦେଶୀ ଶତୃ ସାଥେ ମିଳାଏ ହାତ
ଖେଳାଏ ଦେଶରେ ସେ ଆତଙ୍କବାଦ ।।

ଜନ୍ମଭୂମି ଆଜ ଅଟେ ବିପର୍ଯ୍ୟସ୍ତ
ତା ଲୋତକ ଧାର କେ କରିବ ଧୌତ,
ଜାଗରଣ ଯେବେ ନ ହେବେ ସନ୍ତାନ
ରଚିବାକୁ ପୁନଃ ମହାନ ସଂଗ୍ରାମ ।।

# ତୋର ପ୍ରତିଛବି

ଶୁଭାଂଶୁ କୁମାର ବିଶ୍ୱାଳ



ଆଖି କୋଣେ ମୋର ଯେତେ ପାଣି ଥିଲା
କରୁଥିଲା ଅସ୍ତବ୍ୟସ୍ତ ,
ଅମାନିଆ ହୋଇ ଲୁହ ନାଆଁ ନେଇ
ବହିଲା ଗୋଟେ ପରସ୍ତ ।
ଦେଖି ହସୁଥିଲେ କେତେ ଜଣ ବଂଧୁ
ତୁ କମେଇ ଦେଲୁ ମନ
ତୋ ମନେ ମୋ ପାଇଁ କି ଭାବନା ଥିଲା
ଜାଣି ପାରିଲି ସେ ଦିନ ।
ଆମର ସଂପର୍କ ନିଆରା ଲାଗୁଛି
ସ୍ୱାର୍ଥପର ଦୁନିଆରେ ,
ତୋ ବିନା ମିତରେ ବଂଚି ପାରିବିନି
ଚାଲିଗଲେ ମୋ ଠୁ ଦୁର ।
ତୋ ବୋଲି ମାନିବି ଚେଇଁଥିବା ଯାଏଁ
ସଜେଇ ମନ୍ଦିରେ ଦେବୀ ,
ନିଜ ଲୁହ ପୋଛି ହସି ଦେଉଛି ମୁଁ
ଦେଖି ତୋର ପ୍ରତିଛବି ।

ନୟାଗଡ଼ ସ୍ୱୟଂଶାସିତ ମହାବିଦ୍ୟାଳୟ , ନୟାଗଡ଼
ଓଡ଼ିଆ ବିଭାଗ , ୨ୟ ବର୍ଷ
ମୋବାଇଲ-୯୪୩୯୫୭୮୧୧୬

# ପ୍ରେୟସୀ

ଅଜିତ କୁମାର ସାବତ



ମୋ ଜୀବନର ଘାତ ପ୍ରତିଘାତରେ
ଶରୀରର ଶୋଣିତରେ
ହାତର ଅଙ୍କାବଙ୍କା ଭାଗ୍ୟରେ
ମନର ମାନସିକତାରେ...
ତୁମେ ଓ ତୁମର ଅସ୍ତିତ୍ୱ
ମଳୟର ମହମହ ମଧୁଝର କସ୍ତୁରୀ ସୁଗନ୍ଧ ପରି
କାହିଁକି ମୋତେ ଦୋଳାୟିତ କରୁଛ
ମୋର ସମସ୍ତ ପରିଚିତ ଅପରିଚିତ
ଭାବ ଓ ଭାବନାରେ
ଚିନ୍ତା ଓ ଚେତନାରେ
ଭାଷା ଓ ବର୍ଣ୍ଣନାରେ
ସୁନେଲି ଓ ସବୁଜିମାରେ
ତୁମ ସହ ମୋର ଏକ ନିବିଡ଼ ଆତ୍ମୀୟତା
କାହିଁକି ମୋତେ ଦୋଳାୟିତ କରୁଛ ?
ହେ ମୋର ପ୍ରେୟସୀ
ମନର ମାନସୀ
ମୋ ଚିର ଇପ୍‌ସିତା
ଆସ... ଏବେ ତ ଆସିଯାଅ
ମୋତେ ଓ ମୋ ମନକୁ
ଭିଜି ଭିଜାଇ ଦିଅ
ମୋ ସହ ନିଜକୁ
ହଜି ହଜାଇ ଦିଅ
ମୋର କଳ୍ପନା ଓ ବର୍ଣ୍ଣନାର ଶତଉର୍ଦ୍ଧ୍ୱରେ
ତୁମର ଚିର ଶାଶ୍ୱତ ପ୍ରେମରେ
ମୋ ସହ ବୁଡ଼ି ଓ ମୋତେ ବୁଡ଼ାଇ ଦିଅ ।

# ସଂଭେଗ

ସୁଶାଂତ ଦାଶ



ବହଳ ଅନ୍ଧାରରେ

ଲୁଚଗଲ୍ ପରି

ଜହ୍ନ ଆଉ ତାରା

ତମ ଦେହର ବନ୍ଧନରେ

ମୁଁ ଲୁଚଗଲି

ହୋଇ ଆତ୍ମହରା ।

ଏ ପ୍ରେମ ନା ବଭ୍ରେମ

ସ୍ୱପ୍ନ ନା ସଂଭେଗ

ପାରୁଛ ଯଦି କୁହ

ଯଦି ମୋର ପୂଣ୍ୟ

ମୋତେ ମୁକ୍ତି ଦଅ

ଯଦି ମୋର ପାପ

ମୋତେ କ୍ଷମା ଦଅ 

ନୀଳାଦ୍ରୀ ନିବାସ
୫, ବାପୁଜି ନଗର ବ୍ୟାଙ୍କ କଲୋନୀ
ବ୍ରହ୍ମପୁର - ୭୬୦୦୦୪, ଓଡ଼ିଶା
ଫୋନ୍ - ୯୯୩୭୨୨୫୦୯୭

# ପ୍ରହେଳକା

ଡା ସନ୍ଧ୍ୟାରଣୀ ପାଣିଗ୍ରାହୀ



ଚନ୍ଦ୍ର ଉଠେ କଳାବାଦଲ ଉହାଡ଼ରେ
ମୋ ସହ ତୁମକୁ ଦେଖି ହସିବାରେ
ଖୋଜବୁଲେ ତାରର ବରଯାତ୍ରୀରେ
ଟିମ୍ ଟିମ୍ କରେ ନକ୍ଷତ୍ର ଆଲୁଅରେ
ରତରଣୀର ଆଗମନ ଏଥିପାଇଁ
ମୋ ମନ ଅଭସାରରେ
ତୁମ ଅଗଣାରେ ଆଲୁଅ ବଛାଇ
ସପନର...

ନଜକୁ ଭସେଇ ଖୋଜବା ସପନରେ
ରତର ଏ ଅଭନବ ଅଭସାରରେ
ବୁଭୁକ୍ଷୁ ବାସନା ଭର ମନ ଓ ଦେହରେ
ମୁଁ ପହଞ୍ଚେ ତୁମର ପାଶରେ
କେର କେର ଚେନାଏ ହସର ଫୁଆର
ମୁଠା ମୁଠା ବଛାଇ ଭରେ ଅନୁକୋଣର
ଆଖି ଖୋଲ ଦେଖିଲ ସବୁ ମରୀଚକା
ସ୍ପନ୍ଦନ ସପନର ଏ ସବୁ ପ୍ରହେଳକା ।

ବରଷ୍ଠ ସ୍ତ୍ରୀ ଓ ପ୍ରସୂତୀ ରେଗ ବଶେଷଜ୍ଞା
ଡକ୍ଟର୍ସ ଲେନ୍, ନୂଆ ବସଷ୍ଟାଣ୍ଡ
ବ୍ରହ୍ମପୁର - ୭୬୦୦୦୧

# ଈଶ୍ୱର ବିଶ୍ୱାସରୁ ବଳ ମିଳେ !!!

ବାଲ୍ମୀକି ନାୟକ



ସମସ୍ତ ଈଶ୍ୱର ବିଶ୍ୱାସୀ ଲୋକମାନେ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣିତ କରିବାପାଇଁ ଯୁକ୍ତି କରିଥାନ୍ତି - 'ବିଶ୍ୱାସ (ଈଶ୍ୱର)ରୁ ହିଁ ବଳ ମିଳେ ।' କିମ୍ବା ଈଶ୍ୱର ବିଶ୍ୱାସ ମୂଳେ ଏ ଜଗତ । ଏ କଥା ସତ ଯେ ବିଶ୍ୱାସ ନାମକ ଏକ ଅଦୃଶ୍ୟ ଶକ୍ତିଦ୍ୱାରା ସମସ୍ତ ପ୍ରାଣୀ ଜଗତ ପରିଚାଳିତ ହେଉଛି । ଏହି ଶକ୍ତି କେବଳ ମଣିଷ ଭିତରେ ସୀମାବଦ୍ଧ ନୁହେଁ । ପଶୁ ପକ୍ଷୀଙ୍କ ଭିତରେ ବି ବିଶ୍ୱାସ ରହିଥିବା ଦେଖିବାକୁ ମିଳୁଛି । ଏହା ଏକ ମନସ୍ତାତ୍ତ୍ୱିକ ପାଠ । କିଏ, କାହିଁକି, କାହା ଉପରେ, କେତେ ସମୟ ପାଇଁ ଓ କେତେ ପରିମାଣର ବିଶ୍ୱାସ କରେ, ତାହା ବି ନିର୍ଦ୍ଧାରଣ କରିବା ସହଜସାଧ୍ୟ ନୁହେଁ । ଆଜିର ବିଶ୍ୱାସ ପରମୁହୂର୍ତ୍ତରେ ଅବିଶ୍ୱାସରେ ପରିଣତ ହୋଇପାରେ ଏବଂ ଆଜିର ଅବିଶ୍ୱାସ କାଲି ବିଶ୍ୱାସରେ ପରିଣତ ହୋଇପାରେ । ବିଶ୍ୱାସର ଅର୍ଥ ଭବିଷ୍ୟତରେ କିଛି ପାଇବା ଏବଂ ଅବିଶ୍ୱାସର ଅର୍ଥ ଭବିଷ୍ୟତରେ କିଛି ହରେଇବା । ଅତୀତର ଘଟଣାବଳୀ ଉପରେ ଆଧାରିତ ଅନୁଭବରୁ ବିଶ୍ୱାସ ଓ ଅବିଶ୍ୱାସ ଜନ୍ମ ନେଇଥାଏ । ମଣିଷ ମଣିଷଙ୍କ ଭିତରେ ହେଉ ଅବା ମଣିଷ ଓ ପଶୁମାନଙ୍କ ଭିତରେ ଗଢ଼ି ଉଠୁଥିବା ବିଶ୍ୱାସ ମୂଳରେ ରହିଛି - ଆତ୍ମରକ୍ଷାର ଭାବନା । ଭୌତିକ ଜଗତରେ ଏହି ବିଶ୍ୱାସ କଥା ତ ସହଜରେ ବୁଝାପଡୁଛି କିନ୍ତୁ ଅଧିଭୌତିକ ଜଗତର କାଳ୍ପନିକ ମୋକ୍ଷ, ସ୍ୱର୍ଗ, ନିର୍ବାଣପ୍ରାପ୍ତି ଆଦିର ବିଶ୍ୱାସ ଦ୍ୱାରା ମଣିଷର କଣ ଲାଭ ହେଉଛି ବା କ୍ଷତି ହେଉଛି ତାହା ବିଚାର କରିବା ଉଚିତ ।

ମନୋବୈଜ୍ଞାନିକ ମାନେ ଗବେଷଣା କରି କହିଛନ୍ତି - ମଣିଷ କୌଣସି କାଳ୍ପନିକ ଶକ୍ତି ଉପରେ ବିଶ୍ୱାସ କରିବା ଅପେକ୍ଷା ନିଜ ଭିତରେ ଆତ୍ମବିଶ୍ୱାସ ବୃଦ୍ଧିକଲେ ଜୀବନରେ ସଫଳତା ପାଇବା ସହଜ

ହୋଇଥାଏ । ଆତ୍ମବିଶ୍ୱାସ ବୃଦ୍ଧି କରିବା ପାଇଁ ଅନେକ ପ୍ରକାର ବୈଜ୍ଞାନିକ ପଦ୍ଧତି ଓ ଉପକରଣ ଉଦ୍ଭାବନ ହୋଇ ପାରିଛି । ସେମାନେ ଗବେଷଣାରୁ ଜାଣି ପାରିଛନ୍ତି - ଭାଗ୍ୟ ଓ ଭଗବାନଙ୍କ ଉପରେ ବିଶ୍ୱାସ କରୁଥିବା ବ୍ୟକ୍ତି ମାନସିକ ସ୍ତରରେ ପଙ୍ଗୁ ହୋଇଯାଏ । ସେ ସ୍ୱତନ୍ତ୍ର ଭାବରେ କିଛି ବି ଚିନ୍ତା କରିପାରେ ନାହିଁ । ପରିଣାମ ସ୍ୱରୂପ ଈଶ୍ୱରବିଶ୍ୱାସୀ ମନ ନେଇ କେହି ଆତ୍ମବିଶ୍ୱାସୀ ହୋଇପାରେ ନାହିଁ । ସେ ସବୁବେଳେ ଏକ ଅଜଣା ଆତଙ୍କ ଓ ଅହେତୁକ ଭୟଦ୍ୱାରା ଦ୍ୱିଧାଗ୍ରସ୍ତ ଜୀବନ ଅତିବାହିତ କରିଥାଏ । କାଳେ ଅମୁକ କ୍ଷତି ହୋଇଯିବ ବା ସମୁକ କ୍ଷତି ହୋଇଯିବ ଚିନ୍ତାରେ ହିଁ ସବୁବେଳେ ବୁଡ଼ି ରହିଥାଏ । ସଫଳତା ପାଇବା ପାଇଁ ଭୌତିକ କର୍ମ ଅପେକ୍ଷା ଦୈବୀଶକ୍ତି ଉପରେ ବେଶୀ ବିଶ୍ୱାସ କରେ ।

ବାଙ୍ଗାଲୋର, କର୍ଣ୍ଣାଟକ
ମୋବାଇଲ୍ - ୦୯୪୮୨୦୧୬୨୬୦

# କାଠ କଣ୍ଢେଇ

ବିଦ୍ୟାଧର ପଣ୍ଡା



ଛାତ ଉପରେ ଖରା ଖାଉଥିଲୁ । ଝିଅପୁଅ ଖେଳୁଥିଲେ । କ'ଣ ଟିକେ ବିଗିଡ଼ି ଗଲା, ସେଇଠୁ ପାଟିତୁଣ୍ଡ । ଦୁଷ୍ଟାମୀ ପାଇଁ ମୁଁ ଟିକେ ବର୍ଷିଗଲି ଦୁଇ ଜଣଙ୍କ ଉପରେ । ଏଥର ଭାଇଭଉଣୀ ମନ ମାରି, ମୁହଁ ଶୁଖାଇ ବସିଗଲେ । ସକାଳୁଆ ସହରର ଲିଭିଲା ଷ୍ଟ୍ରୀଟ୍ ଲାଇଟ୍ ଭଳି ମୁହଁ । ଥମ୍‌ଥମ୍ । ହାଲକା ବର୍ଷା ପରେ ରାସ୍ତା କଡ଼ର ଘାସ ଉପରେ ଜମି ଯାଇଥିବା ଧୂଳିର ଆସ୍ତରଣ ପରି ବିଷର୍ଣ୍ଣ ମୁହଁରେ ଅଳସ ଭାଙ୍ଗୁଥିଲା ବିରସତା ।

- ଆରେ କ'ଣ ହୋଇଛି କିରେ । ତମେ ଦୁଇଟା ଏମିତି କାଠ ପିତୁଳା ଭଳି ବସିଛ ଯେ ପୁରା ଚୁପ୍‌ଚାପ୍ । ଏ, ଏମିତି ବସିଛ କ'ଣ ମ ? ଠାକୁର ପୂଜାସାରି ଛାତ ଉପରକୁ ଆସିଥିବା ବୋଉର ସରାଗଭରା କଅଁଳିଆ  କଥାର କିଛି ବି ପ୍ରଭାବ ପଡୁନଥିଲା ଅନାସକ୍ତ ଦୁଇଜଣଙ୍କ ଉପରେ ।

ଏଇ କାଠ ପିତୁଳା କଥା ଶୁଣୁ ଶୁଣୁ ମନକୁ ଆସୁଥିଲା କେତେ ପୁରୁଣା କଥା । କାଠ ମୂର୍ତ୍ତି ଥିଲେ ଆମ ପାଇଁ ଖେଳନା ଭଳି । ପ୍ରତିବର୍ଷ ଭାଦ୍ରବ ମାସରେ ଆମ ମାହାପୁରୁ ଘର ପୁରା ଆଖଡ଼ା ଘର ପାଲଟି ଯାଉଥିଲା । ସଡ଼କକୁ ଲେସି ହୋଇ ରହିଥିବା ସେଇ ଦାଣ୍ଡପଟିଆ ଘରେ ସବୁ ରବିବାର ବଦଳି ଯାଉଥିଲା ଦୃଶ୍ୟ । ଜମା ହୋଇ ଯାଉଥିଲେ ସାହି ଯାକର ଝିଅ ସକାଳୁ ସକାଳୁ । ସକାଳୁ କ'ଣ ମ, ଆକାଶ ଫର୍ଚ୍ଚା ହେବାର ଢେର୍ ଆଗରୁ, ପୁରା ପାହାନ୍ତିଆରୁ । ସିନ୍ଦୁରା ଫାଟିବାବେଳକୁ ଅନ୍ୟ କିଏ ସ୍କୁଲ୍ ହତା ଭିତରେ ଥିବା ଟଗର ଗଛରୁ ଫୁଲ ନେଇ ଯିବନି ! ଏମିତି ଏକ ଆଶଂକାରେ ଛଟପଟ ଚଗଲା ମନ ସମ୍ଭାଳୁଛି କୁଆଡ଼ୁ ?

ରାତିରୁ ଉଠିବା ପାଇଁ ସ୍ଥିର କରି ଶୋଇଲେ ଆଉ କି ରାତିରେ ନିଦ ହୁଏ । ନିଦ ଗୃଉଁ ଗୃଉଁ

ଭାଙ୍ଗୁଥିବ । ଗଡ଼େଇ ତଡ଼େଇ ହେବା ଭିତରେ ଲାଗୁଥିବ ଏଇ ଯେମିତ ଘଂଟାଏ ଗୁଲିଗଲା ଆଉ ରାତି ପାହିଗଲା କି ? ଖରା ପଡ଼ି ଗଲାଣି କି ଆଉ ? ଏମିତ ଏକ ଛନଛନିଆ ଭାବ ବୋଳି ହୋଇ ଯାଉଥିବ । ଚମକି ଯାଉଥିବା କିଶୋରୀ ବୟସର ଧକ୍ ଧକ୍ ଛାତି । ମୋହନବଂଶୀର ସ୍ୱନରେ ବାୟାଣୀ ରାଧାଙ୍କ ଭଳି ଶୋଇବା ସ୍ଥାନରୁ ଉଠି ପଳାଇବାକୁ ମନ ହେଉଥିବ । ଘରର ବଡ଼ମାନେ ତାଗିଦ କରୁଥିବେ, ଆଲୋ ରାତି ପାହିନି ଲୋ । ଅଧରାତି ପରା ହୋଇଛି । ଏତେବେଳୁ ଏତେ ଉଚ୍ଛନ୍ନ କିଆଁ । କି ଫୁଲତୋଳା ଯେ, ଟିକେ ଫର୍ଚ୍ଚା ହୋଇ ଆସିବା ପରେ ଗଲେ ହେବନି ?

ହେଲେ ଅମାନିଆ ମନ କ'ଣ ବୁଝୁଛି ? କାହାଠାରୁ ପଛରେ ପଡ଼ିବାର ଯନ୍ତ୍ରଣା ସେଇ କିଶୋରୀ ବୟସର କ'ଣ ସହଜରେ ସହ୍ୟ ହୁଏ ! ସମସ୍ତଙ୍କୁ ଟପି ଆଗକୁ ବଢ଼ିବାର, ଶୀର୍ଷକୁ ଚଢ଼ିବାର ନିଶାରେ ଆଛନ୍ନ ବୟସରେ ଟିକିଏ ବି ବିଳମ୍ବ ଯୁଗଯନ୍ତ୍ରଣା ଭଳି ଲାଗେନି କି ?

ଖୁଦୁରୁକୁଣୀ ଓଷା । ବଡ଼ ଲୋକଙ୍କ ଆକଟକୁ ପାସଙ୍ଗରେ ନ ପକାଇ ଝିଅମାନେ ବାହାରି ଆସିଥିବେ ଘରୁ । ନିଜ ଗାଁ ଭିତରେ ଗାଁ ଝିଅଙ୍କର ଡ଼ର ଗୋଟାଏ କ'ଣ ? ପୁଣି ଜଣଜଣକ ଘରୁ ବଡ଼ କେହି ଜଣେ ବି ଗୁଲି ଆସିଥିବେ ସାଥିରେ । ବଡ଼ ଭଉଣୀ ନିଶ୍ଚୟ, ନଥିଲେ ବଡ଼ କି ସାନ ଭାଇ । ଭାଇମାନେ ଏଇବେଳେ ଭାରୀ କାମରେ ବି ଆସନ୍ତି । ସ୍କୁଲ୍ ପଛପଟ କେନାଲ କଡ଼ରେ ଥିବା କାଂଚନ ଗଛ ନ ହେଲେ ବଡ଼ ଟଗର ଗଛରେ ଚଢ଼ି ଫୁଲ ତୋଳି ଦେବାପାଇଁ । କେତେ ସାହସ ବି ପାଖରେ ଥିଲେ ।

ଗାଁର ସବୁ ସାହିରେ ପୂଜା । କୋଉ ସାହିରେ ଦୁଇ ତିନି ଯାଗା । ମନ ଏକାଠି ହେଲେ ଶହେ ଝିଅ ଏକାଠି ମେଳ । ଟିକେ ମନ ଫଟାଫଟି ହେଲେ ଆଉ ଗୋଟେ ନୂଆ  ଜାଗାରେ ପୂଜା । ହେଲେ ସବୁଠାରେ ମାଟିରେ ଗଢ଼ାଚାଳି ଭାଲକୁଣ୍ଡୀ ପୂଜା ।

ଆମ ମାହାପ୍ର ଘରେ ବି ଖୁଦୁରୁକୁଣୀ ଓଷା । ହଲେ ନିଆରା । ସବୁଠି ମାଟି ମୂର୍ତ୍ତି । ହେଲେ ଆମର କାଠ ପ୍ରତିମା । କାରଣ ମୁଁ ଜାଣି ପାରେନି । କାହାକୁ ବି ପଗ୍ଭରେନି । ପିଲା ଲୋକ । ହେଲେ ଦିନେ ପଗ୍ଭରିଲି ବୁଢ଼ୀ ମା'କୁ । ମା' ଲୋ ଆମ ମଙ୍ଗଳା କ'ଣ ପାଇଁ କାଠରେ ତିଆରି । ଅନ୍ୟମାନେ ତ ଖୁଦିରଙ୍କୁଣୀ ମାଟିରେ ତିଆରି ସୁନ୍ଦର ରଙ୍ଗୀନ ମୂର୍ତ୍ତି ପୂଜା କରୁଛନ୍ତି । ଆମ ଘରେ କାଠର କ'ଣ ପାଇଁ

କହ ?

କାଠ ପ୍ରତିମା କଥା ଶୁଣୁ ଶୁଣୁ ଜେଜେମା' ତା' ପାଟିରେ ଆଙ୍ଗୁଠି ରଖିଲା । ମତେ ଚୁପ୍ ରହିବାକୁ ଠାର ଦେଲା । ଏପଟେ ମତେ ଅଧିଖିଳ ଆକଟ କଲା । ଆରେ କାଠର ନା ପଥରର ଏମିତି କ'ଣ ପଗ୍ଚରନ୍ତି । ସେ ପରା ଠାକୁରାଣୀ ।

ମା'ର ଠାକୁର ଠାକୁରାଣୀଙ୍କ ଉପରେ ଅଖଣ୍ଡ ଭରସା । ଯା'ର କାରଣ ମୋ ନନା । ମୋ ନନାଙ୍କର କୁଆଡ଼େ ପିଲା ଦିନେ ଭୟଙ୍କର ରୋଗ ହୋଇଥିଲା । ବାରମ୍ବାର ଦେହପା ଖରାପ ହୁଏ । ହେଲେ ଜେଜେମା'ର ଘରି କାଇଦା । ତା' ପିଲାର କାନରେ କେମିତି ପାଣି ପଶିବନି !

ମୋ ନନା ଜନ୍ମ ହେବା ଆଗରୁ ଦୁନିଆର ଅନେକ ସୁଖ ହରାଇ ସାରିଥିଲା ମୋ ବୁଢ଼ୀମା' । ଦଶଦଶଟା ପିଲା ଜୀବନକୁ ଜାଣିବା ଆଗରୁ ବାଟ କାଟିଥିଲେ ସେପାରିକୁ । ବୋଝ ବୋଝ ଦୁଃଖ ମୁଣ୍ଡେଇ ତଥାପି ଆଶାର ଧାରେ ଧାରେ ଗ୍ଚାଲୁଥିଲା ମୋ ବୁଢୀମା' । ଅସମୟରେ ଏତେ ସନ୍ତାନଙ୍କୁ ହରାଇ ଅନେକ ଅନ୍ଧାରକୁ ସାଉଁଟିବା ପରେ ବତୀଘର ହୋଇ ଆସିଥିଲା ପୁତ୍ରସନ୍ତାନଟିଏ । ମୋ ନନା । ଯମକୁ କେତେ କ'ଣ ବାଡ଼ ପକାଇ ରଖିବା କଥା । କାନ କଣା କରି, କାନକୁ ନିହାତି ଖରାପ ଶୁଭୁଥିବା ମୁଣ୍ଡପତା ଭଳି ନାଁ ଦେଇ, ଏମିତି କେତେ କ'ଣ କରିଥିଲା ।

ପୁଅ ଆଉ ଝିଅଙ୍କ ଆଡ଼େ ଗ୍ଚହିଁଲି । ମଉଳି ଆସିଲାଣି ଅଳପ ସମୟ ତଳର ମୌନତା । ବୋଉ ପୁଣି ଥରେ ଡ଼ାକଲା, ଆରେ ଖାଇ ଦୋଉନ । ସ୍କୁଲ୍ ଯିବନି କି ? ପୁଅ ହସି ଉଠିଲା । ଆରେ ଆରେ ଦେଖିମ ଯାକୁ । ରବିବାରଟାରେ କହୁଛି ସ୍କୁଲ୍ ଯିବନି କି ? ତା' ହସରେ ତାଳ ମିଳାଇ ମୁଁ ବି ହସିଦେଲି । ଏଥର ଝିଅ ବି ହସି ଉଠିଲା । ଏଇ ସୁଯୋଗରେ ମୁଁ କହିଲି ଶୁଣିବ କାଠ କଣ୍ଢେଇର କଥା ।

ହଉ ଶୁଣ । ସିଧା ନେଇ ଗଲି ସେମାନଙ୍କୁ ୭୦ ବର୍ଷ ତଳକୁ । ମୋ ନନାଙ୍କ ପିଲାଦିନର କାହାଣୀକୁ । ଆମ ଘରକୁ ପଶୁ ପଶୁ ଗୋଟେ ଯାଗାରେ ଟଙ୍ଗା ହୋଇଥିବା ନନାଙ୍କ ଫଟୋକୁ ଯିଏ ଆସିବ ଦେଖିବ ପ୍ରଥମେ । ପିଲାଦିନେ ସେ ଖୁବ୍ ଦୁର୍ବଳ ଥିଲେ । ବାରମ୍ବାର ଦେହଖରାପ ହେଉଥିଲା । ଜେଜେମା' ପାଇଁ ମଙ୍ଗଳା ଥିଲେ ଭରସା । ମଙ୍ଗଳାଙ୍କ କାଳେସୀ କୁଆଡ଼େ ପ୍ରତ୍ୟକ୍ଷ ଠାକୁରାଣୀ । ତାଙ୍କ

ଅସଲ ଅବତାର । ତା'ଠି ବଳେ ହୁଅନ୍ତି ମା' ମଙ୍ଗଳା । ବାରମ୍ବାର ଦେହ ଖରାପ । ଆଶା ପ୍ରାୟ ହରାଇ ଥରେ ମଙ୍ଗଳା ମନ୍ଦିରକୁ ତାଙ୍କୁ ନେଇ ଯାଇଥିଲା ଜେଜେମା' । ରାତିରେ ପ୍ରସନ୍ନ ହେବାର ବେଳ । କାଳେସୀ କୁଆଡ଼େ ସେଇ ଘନ ଅନ୍ଧାର ରାତିରେ ଗୋଟାଏ ହାତ ଧରି ଶୁନ୍ୟ ଶୂନ୍ୟେ ଟେକି ନେଲା ନନାଙ୍କୁ । ହୋଇ ହୋଇ କେତେ ସେଇ ତିନି କି ଚାରି ବର୍ଷର ସେଇ ଛୁଆବେଳର ମୋ ନନାଙ୍କୁ ।

ନହକା ମେଂଚଡ଼ ପିଲା । ରାତି ଅଧରେ ନିଦ ଭାଙ୍ଗିଲେ ମା' କୋଳରେ ଜୁଳୁଜୁଳୁ ହୋଇ ଚାହିଁବାରେ ଅଭ୍ୟସ୍ତ କୁନି ପିଲାଟି କାଳେସୀକୁ ଦେଖି ଭୟେଁ ସନ୍ତ୍ରସ୍ତ । କୃଷ୍ଣକାୟ କାଳେସୀର ଲାଲ ଟହଟହ ଫୁଲମାଳ ମଣ୍ଡିତ ଚେହେରା । ଚନ୍ଦନ ଚର୍ଚ୍ଚିତ ମୁଖମଣ୍ଡଳ, ମୁନିଆ ଠୀରରେ ହାତ କାଟି ଟପ୍ ଟପ୍ ଅର୍ଘ୍ୟ ମଙ୍ଗଳାଙ୍କ ଆଗରେ ଅର୍ପଣ କରିବ ଆଉ ଜଳନ୍ତା ବଳିତା ପାଟିରେ ପୁରାଇବା ଭଳି ଅଲୌକିକ କାଣ୍ଡକାରଖାନା । ତା'ସାଙ୍ଗକୁ ଚତୁର୍ଦ୍ଦିଗରେ ଘଂଟଘଂଟାର ନାଦ ।

ହଠାତ କାଳେସୀ ମାନେ ମୋ ମା' ପାଇଁ ଯିଏ ମଙ୍ଗଳା ଠାକୁରାଣୀ , 'ମୁଣ୍ଡପତା'ର ହାତକୁ ଧରି ଟାଣିନେଲେ । - ଆରେ ଡରୁଛୁ କ'ଣ ଚାଲ୍ ଚାଲ୍, ତତେ ବୁଲାଇ ଆଣିବି । ତାଳବନ୍ଧର କଳାଘୁମର ପାଣି ଉପରେ କାଳେସୀର ପାଦ । ବୃହତକାୟ ତାଳବନ୍ଧ ପୁରା ୫୦୦ ମିଟର୍ ଲମ୍ବ ଆଉ ଓସାରର । ଏପଟରୁ ସେପଟକୁ ପହଁରି ଗଲେ ପ୍ରାୟ ଅଧଘଂଟା ଲାଗିବ । ହଠାତ ସେଇ ପାଣି ଭିତରେ ନା କୁଆଡ଼େ ଯେମିତି ଉଭାଇଗଲେ ଦୁଇଜଣ । କାଳେସୀ ଆଉ ମୁଣ୍ଡପତା ।

ଫେରିବା ପରେ ନନା ମା'କୁ କହିଲେ । ମା'ଲୋ ମତେ ତ ତାଳବନ୍ଧ ପାର୍ କରାଇ ଦେଲେ ମଙ୍ଗଳା । ଶୂନ୍ୟେ ଶୂନ୍ୟେ ଯେମିତି ଉଡ଼ିଗଲେ । ତାଙ୍କ ପାଦରେ ପାଣି ଲାଗୁନଥିଲା ତ ! କାଳେସୀ ତ ହାତରେ ଟେକି ନେଉଥିଲେ ତାଙ୍କୁ । ତାଙ୍କ ନିଜ ପାଦ ବି ପାଣିରେ କି ମାଟିରେ ଲାଗୁନଥିଲା । ବିଚିତ୍ର ନୁହେଁ କି !

ଇଏ ସେଇ ଅଲୌକିକ ମଙ୍ଗଳା । ମୁଣ୍ଡପତାକୁ ଧରି ସେଦିନ କାଳେସୀ ଫେରିବା ପରେ ମା'କୁ ଆଉ ସମ୍ଭାଳେ କିଏ । ମା' ଲୋ ତୁ ମୋର ଭରସା । ମା' ଲୋ ତୁ ତା ମୁଣ୍ଡପତାକୁ ରକ୍ଷା କରେ.. ଏମିତି କେତେ କେତେ ବାହୁନିଥିଲା । କାଳେସୀ ଅଭୟ ବାଣୀ ଢାଳିଦେଲେ, ଯାଃ, ଯ୍ୱର ଆଉ କିଛି ରୋଗ ବୈରାଗ ହେବନାହିଁ । ତୋର ଆହୁରି ପିଲାଛୁଆ ହେବ । ଯାଃ, ନିର୍ଭୟରେ ଯାଃ, ଏକମୁହାଁ ହୋଇ ଯାଃ

। ପଛକୁ ଗ୍ରହିଁବୁନ ।

ସେଇ ଯେ ଏକମୁହାଁ ହୋଇ ମା' ଆସିଥିଲି ଯେ ଆସିଥିଲି । ଆଉ ଗତ ଅଧରେ ମଙ୍ଗଳାଙ୍କ ପାଖକୁ କେବେ ଯିବା ଦରକାର ପଡ଼ିନଥିଲି । ସତକୁସତ ଆଉ ତନୋଟି ପିଲି ବ ଜନ୍ମ ହେଲେ । ସମସ୍ତେ ବଂଚଲେ । ମା' କୋଳଗୁଡ଼ି ପାରୁନଥିବା ଦୁର୍ବଳ ମୁଣ୍ଡପତା ମଣିଷ ହେଲି । ସାତ ନଈ ଡେଇଁ କାହିଁ କେତେ ଦୂର ଯାଗାକୁ ପେଟ ପୋଷିବାକୁ ଗଲି । ଗ୍ରକରବାକର କଲି । ବାସ୍ ସେଇ ଦନୁ ମଙ୍ଗଳାଙ୍କ ପ୍ରତ ଜେଜେମାର ଯେଉଁ ବଶ୍ୱାସ ତାହା ସେମିତ ରହଗଲି । ମା' ମଙ୍ଗଳା ଘରର ମଣିଷ ହୋଇଗଲେ । ଜେଜେମା'ର ଖୁସି ପାଇଁ ଜେଜେବାପା ଗଢ଼ାଇଦେଲେ ମଙ୍ଗଳାଙ୍କ କାଠର ପ୍ରତମା । ଆଉ ତାଙ୍କ ପାଇଁ ଖଂଜଦେଲେ ଗୋଟିଏ ପୁରା କୋଠରୀ ।

ବୁଢ଼ାବାପା ଗଢ଼ାଇ ଦେଇଥିବା ସେଇ ପ୍ରତମାକୁ ସବୁଦନ ସକାଳେ ସଂଜେ ପୁଜା କରାଗଲି । ମୋ ପିଲିଦନେ ଉଚ୍ଚତା ଦୃଷ୍ଟିରୁ ମଙ୍ଗଳା ହୋଇଗଲେ ମୋର ସମବୟସ୍କ ସାଙ୍ଗ ଭଳ । ବଶେଷ କର ଭାଦ୍ରବ ମାସରେ । ଖୁଦୁରୁକୁଣୀ ପ୍ରଥମ ପାଳ ପୂର୍ବରୁ ତାଙ୍କର ନବ କଳେବର ହୁଏ । ସବୁଠୁ ମଜା କଥା ହେଉଛ ଜେଜେବାପା ଦୁଇ ମଙ୍ଗଳାଙ୍କ କାଠ ମୂର୍ତ୍ତି ଗଢ଼ାଇ ଦେଇଥାନ୍ତ ।

ଦୁଇ ମଙ୍ଗଳାଙ୍କ ମଧ୍ୟରୁ ଜଣେ କାଳୀ ଜଣ ଗୋରୀ । ମୁଁ ଏ ରହସ୍ୟ ଭେଦ କରବାକୁ ସେଦନ ଗ୍ରହିଁ ନଥିଲ କ ଆଜ ବ ଗ୍ରହୁଁନାହିଁ । ଆମ ଦୁଆରେ ଗୋଟେ ଉଚ୍ଛୁଳା କୂଅ ଥାଏ । ଉଚ୍ଛୁଳା କୂଅ ନା ବଡ଼ ବଚତ୍ର କୂଅ । ବର୍ଷାଦନେ ବାହାରର ପାଣି ପୂଅ ଭତରେ ପଶେ । କୂଅ ପାଣି ବାହାରକୁ ବାହାରବା ଦେଖିଛନ୍ତ ।

ଇଏ ସେଇ କୂଅ । ଆମ ଘରର ଅବସ୍ଥିତ ଥିଲି ସେଇଭଳ । ବାଡ଼ିପଟେ ପୋଖରୀ, ଦାଣ୍ଡରେ ସଡ଼କ । ଘର ପାଖରେ ଏକ ବଲ । ଅଗଣାଠାରୁ ଏଇ ବଲର ପତନ ସାମାନ୍ୟ ତଳେ । ବର୍ଷା ଦନେ ଆମେ ବାଲଟି ହାତରେ ବୁଡ଼ାଇ କୂଅରୁ ପାଣି ଆଣୁ ।

ସେଇ କୂଅରେ ଆମେ ଦୁଇ ମଙ୍ଗଳା କାଳଗୋରୀଙ୍କୁ ବୁଡ଼ାଉ ଟୁବ୍‌ଟୁବ୍ । ଅବଶ୍ୟ ଜେଜେବାପାଙ୍କ ତାଗିଦ ଥାଏ କାଠ ପ୍ରତମାଙ୍କୁ ବେଶୀ ଭଜାଇବ ନାହିଁ । ଜଗନ୍ନାଥ ସିନା ଗାଧୋଇ

ଜ୍ୱରରେ ପଡ଼ନ୍ତି । ତାଙ୍କ ପାଇଁ କେତେ ବୈଦ୍ୟ ଖଂଜା, କେତେ ଫୁଲୁରୀ ତେଲର ବ୍ୟବସ୍ଥା । ଆମ ମଙ୍ଗଳାଙ୍କୁ ଜ୍ୱର ହେଲେ ବୁଝିବ କିଏ? କାଠ ଜିନିଷ ପାଣିରେ ଭିଜିଲେ ନଷ୍ଟ ହେବ ଶୀଘ୍ର । ସେଇ କଥାଟିକୁ ବାଗରେ ବୁଲାଇ କହି ଦେଇଥାନ୍ତି । ହେଲେ ଆମେ ସମୟ ସୁବିଧା ଦେଖି କାଳିଗୋରୀଙ୍କୁ ମନଇଚ୍ଛା କରି ବୁଡ଼ାଏ । ସେ ଖେଳରେ ଥିଲା ଗୋଟେ ନିଆରା ମଜା ।

ଦୁଇ କାଠ ପ୍ରତିମାଙ୍କୁ ପାଣିରେ ବୁଡ଼ାଇବା ପୂର୍ବରୁ ଅନାବୃତ କରାଯାଏ । ବାସୀ କପଡ଼ାରେ କ'ଣ ପୂଜା କରାଯିବ? କପଡ଼ା ବୋଇଲେ ଝାଲେରୀ କାଗଜ । ରଙ୍ଗବେରଙ୍ଗର କାଗଜ । ଗୋଟିଏ ରଙ୍ଗର ଶାଢ଼ୀ । ପୁଣି ଭିନ୍ନ ରଙ୍ଗର ବ୍ଲାଉଜ୍ । ସାଇଜ୍‌ରେ କାଟି ଅଠାରେ ମଡ଼ାଇ ଦିଆଯାଏ । ଦୂରରୁ ଭ୍ରମ ହେବ ଯେମିତି କୁନି ମଙ୍ଗଳା କୁନି ଶାଢ଼ୀଟିଏ ପିନ୍ଧିଛନ୍ତି ।

ବୁଡ଼ା ଗାଧୁଆ ସରିବା ପରେ ଖରାରେ ଶୁଖାଇ ଦିଆଯାଏ ଦୁଇ ଜଣଙ୍କୁ । ଏହା ପରେ ନବବସ୍ତ୍ର ପରିଧାନର ସମୟ । ବୋଉ ଆଗରୁ କାଟି ରଖିଥିବା ଝାଲେରୀ କାଗଜର ଶାଢ଼ୀ ପିନ୍ଧାଇ ଦିଆଯାଏ । ବର୍ଷା ଦିନର ସକାଳୁଆ ଖରା ଖାଉଥାନ୍ତି କାଳିଗୋରୀ । ଓଷେଇତୁଣୀମାନେ ଫୁଲ ତୋଳିଆଣିବା ପରେ ଘରୁ କ'ଣ ଟିକେ ଟିକେ ଜଳଖିଆ ଖାଇ ପୁଣି ଦାଣ୍ଡାନ୍ତି ଆମ ମାହାପ୍ରୁ ଘରକୁ । ମାଳ ଗୁନ୍ଥନ୍ତି । ଆମ୍ବତୋରଣ ବି । ଯା ଭିତରେ କାଠ ପ୍ରତିମା ଦୁହିଁଙ୍କର ଶାଢ଼ୀ ବି ଖରାରେ ପୁରା ଖାଡ଼ା ହୋଇ ଯାଇଥାଏ । ମୁଁ ଆଉ ଅନ୍ୟ ଜଣେ ଟେକି ନେଉ ଉଭୟଙ୍କୁ ବେଂଚ ଉପରକୁ ।

ମଙ୍ଗଳାଙ୍କ ପଛ ପାଖରେ କାନ୍ଥରେ ଥାଏ ସାଧବପୁଅଙ୍କ ବୋଇତ, ବୋଇତ କୋଣରେ ବସିଥିବା ତଅପୋଇ ଆଉ ତଅପୋଇର ପ୍ରିୟ ସାନବୋହୂ ଆଉ ତଅପୋଇର ଦୁଃଖର ସାଥୀ ସାଙ୍ଗରେ ଛେଳିପଲଙ୍କ ଭିତରୁ ଗୋଟିକ ପାଖରେ ଘରମଣି ଲେଖା ହୋଇଥିବା ଚିତ୍ର ।

ସେଇ ମଙ୍ଗଳା ବି ସମୟଚକ୍ରରେ କୁଆଡ଼େ କୁଆଡ଼େ ଗଲେଣି । ପ୍ରଥମେ ବଦଳିଲା ଆସ୍ଥାନ । ପିଉସୀମାନେ ବିବାହ କରିବା ପରେ ବି କିଛି ବର୍ଷ ଗ୍ଲଲିଥିଲା । ପରେ ପଡ଼ୋଶୀ ଘରକୁ ସ୍ଥାନାନ୍ତରିତ ହେଲା ଖୁଦୁରୁକୁଣୀ ଓଷା । ସେମାନେ ବି ମାଗିନେଲେ ଗୋରୀ ମଙ୍ଗଳାଙ୍କୁ ।

ଜେଜେମା' ଗ୍ଲଲିଗଲା । ଏହାର ବହୁ ବର୍ଷ ପର୍ଯ୍ୟନ୍ତ ବି କାଳୀ ମଙ୍ଗଳା ଥିଲେ ଆମ ଘରେ ।

ପୂଜାପୂଜ ବ ହେଉଥିଲା । ଆମର ପୁରୁଣା ଦାଣ୍ଡଘର ଭଙ୍ଗିଗଲା । ତା'ପରେ ତାଙ୍କର ପୂଜା ପାଇଁ ଆଉ ପ୍ରଶସ୍ତ ଜାଗାଟିଏ ମିଳିଲାନ । ପରେ ମୋର ଜଣେ ମାଉସୀଝିଅର ଅତ୍ୟଧିକ ଆଗ୍ରହକୁ ପୁଂଜ କରି ମଙ୍ଗଳା ଅଗ୍ନନକ ଦନେ ଗ୍ଲଲଗଲେ ତାଙ୍କ ଘରକୁ । ତଥାପି ମଙ୍ଗଳାଙ୍କ ଫଟୋ ପୂଜା ଅବ୍ୟାହତ ରହିଲା ଆମ ଘରେ ।

ଏଥର ଆଜକାଲର କଥା । ଏବେ ଦଶହରା ବା ଅନ୍ୟ ପୂଜା ପରେ ବସର୍ଜନସ୍ଥଳକୁ ଦେଖିଲେ ଭାରି କଷ୍ଟ ଲାଗୁଛି । ହାତଗୋଡ଼ ଭଙ୍ଗି, ମୁହଁ ମାଡ଼ି ଫିଙ୍ଗି ଦଆଯାଉଛି । ଆମ କାଗଜ ଶାଢ଼ୀ ପିନ୍ଧା କାଠମଙ୍ଗଳା କେତେ ସୁନ୍ଦର ଥିଲେ । ଖରା ବର୍ଷା ଶୀତ ସବୁ ଋତୁରେ ଚକମକ କରୁଥିଲେ । ନା ଥିଲା ନୂଆ ମୂର୍ତ୍ତି କଣା ଚନ୍ଦା । ନା ଭଙ୍ଗିଯିବାର ଭୟ । ସବୁ ଦୁର୍ଗା, ମହାଲକ୍ଷ୍ମୀ, ଗଜଲକ୍ଷ୍ମୀ ଓ ଶ୍ୟାମାକାଳୀ, ମହାକାଳୀମାନେ କାଠ ମୂର୍ତି ହୋଇ ଯାଆନ୍ତେ ନ ?

କଥା ଏମିତ ସାରିବାକୁ ଯାଉଥିବାବେଳେ ଡିନା ଯୋଡ଼ିଲା ଖୁଅ । ବାପା, ସବୁ କାଠ ମୂର୍ତି ହୋଇଥିଲେ ତୁମ ସୁନା ପୁଅ ଆଉ ଭଙ୍ଗିଥାନ୍ତା କାହାକୁ ? ବୋଉ ହାତରେ ଗଢ଼ି ଶୁଖାଇ ଥିବ, ନହେଲେ ରଙ୍ଗ ଦେଇ ସାରିଥିବ, ଏମିତ ଅବସ୍ଥାରେ କେତେ ମୂର୍ତ୍ତି ପିଲାଦନେ ତୁତୁଲ୍ ହାତରେ ଶହଦ ହୋଇଛନ୍ତ ତମେ ଜାଣିନ କ ? ଏତକବେଳେ କଣ୍ଢେଇନାଚର କାଠକଣ୍ଢେଇ ସାଙ୍ଗକୁ ମନେ ପଡୁଥିଲା ଆମ କାଠର ମଙ୍ଗଳାଙ୍କ କଥା ।

ଅଢ଼େଇଗୁଣ୍ଡି, କାନପୁର,

କଟକ - ୭୫୪୦୩୭, ମୋ - ୮୭୬୩୪୯୫୯୨୯,

ଇମେଲ୍ - bidyapctc@gmail.com

# ଅର୍ଥ ଓ ଅନର୍ଥ

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ



ଅନ୍ଧାରରେ ଚାଲି ଚାଲି ବିନୁ ଥକିଯାଉଥିଲା । ହେଲେ ମୋହନ ତାକୁ ଅଟକି ଯିବାପାଇଁ କିମ୍ବା ବିଶ୍ରାମ ଦେବା ଭଳି କୌଣସି କଥା କହୁନଥିଲା । ସେମାନେ ସେଇମିତି ଚାଲିଥିଲେ । ବୁଢ଼ାପଦର ଗାଁ ଡେଇଁଲାପରେ ସେମାନେ ରାସ୍ତାରେ କେଉଁଠି ବି ଆଲୋକଟିଏ କି ବତୀଟିଏ ଦେଖିନାହାନ୍ତି । ଅନ୍ଧାରରେ ପାଦ ଏଣେତେଣେ ପଡୁଛି, ହାତରେ ଧରିଥିବା ସାନ ଟର୍ଚ୍ଚ ଲାଇଟରେ ସେମାନେ ଆଗକୁ ବଢିଚାଲିଛନ୍ତି । ବୁଢ଼ାପଦର ପରେ ରଣଗାଁରେ ପହଞ୍ଚିବା ପରେ କିଛି ବିଶ୍ରାମ ମିଳିପାରିବ ବୋଲି ଭାବି ସେମାନେ ମାଡ଼ି ଚାଲିଛନ୍ତି । ଦିନେ କଅଁଳ ଫୁଲ ପାଖୁଡ଼ା ଉପରେ ପାଦ ଦେଉଥିବା ବିନି ଏବେ ବଣ ବଣ ବୁଲୁଛି । ଅନ୍ଧାରକୁ ଡରୁଥିବା ବିନି ରାତିରେ ଶୋଇବା ବେଳେ ମଧ୍ୟ ଶୟନ କକ୍ଷରେ ବତୀ ଜାଳି ଶୋଉଥିଲା, ସେଇଥିପାଇଁ ସୁଲୋଚନା ଅନେକ ଥର ଥଟାରେ କହିଥିଲା, 'ରୁହ, ତୁମେ ଏଇ ଯୋଉ ଅନ୍ଧାରକୁ ଡରୁଛ, ଭଗବାନ ଦିନେ ତମକୁ ପୁରା ଅନ୍ଧାରରେ ଛାଡ଼ିଦେବେ ।' ବିନି ସେ କଥା ମନେ ପକାଇଲା ବେଳକୁ ସୁଲୋଚନାର ମୁହଁ ଦେଖାଯାଉଛି ଆଉ ସେ ବିକଳ ହୋଇଯାଉଛି । ସେ ବି ତ ଏକା କରିଦେଇ ଚାଲିଗଲା । ଅମାବାସ୍ୟାର ଅନ୍ଧାର ରାତିରେ ସେ ଶୋଇଲା ଯେ ଆଉ ଉଠିଲା ନାହିଁ । କେତେ ଡାକ୍ତର ବୈଦ୍ୟ ନ କରିଛି ବିନି, ହେଲେ କିଛି ଲାଭ ହେଲାନି । କିନ୍ତୁ ବିଧିର ବିଧାନକୁ କିଏ ଅଟକାଇ ପାରିଛି ?

'ଆଉ ପାଦ ଆଗକୁ ଯିବନି ।' ବିନି ବସିପଡୁ ପଡୁ କହିଲା ।

ମୋହନ ଆଗରେ ଚାଲୁଥିଲା, ସେ ବି ଅଟକି ଯାଇ କହିଲା, 'ଭାଇନା, ଏମିତି ହେଲେ ଚାଳିବ କି ? ଯେମିତି ହେଲେ ରାତି ହେଉ ହେଉ ଆମେ ରଣଗାଁରେ ପହଞ୍ଚିବା ଦରକାର । ତେଣେ ସେଇଠି ତମେ ଦିଘଡ଼ି ଶୋଇପଡ଼ିବ । ଚାଲ, ବସିପଡ଼ିଲେ ହବନି ।' ଅନିଚ୍ଛା ସତ୍ତ୍ୱେ ବିନି ଉଠିଲା ଆଉ ଚାଲିଲା । ଦୁଇଘଣ୍ଟାରୁ ସାମାନ୍ୟ ଅଧିକ ସମୟ ହେଲାଣି ସେମାନେ ଚାଲୁଛନ୍ତି ଯେ ସତେ ଯେମିତି ବାଟ ସରୁନାହିଁ । ଦୂରରୁ ଆଲୋକର କିରଣ ଦେଖି ମୋହନ କହିଲା, 'ହେଇ, ରଣଗାଁ ଆସିଗଲା ।' ମୋହନ କଥା ଶୁଣୁଶୁଣୁ ବିନି ଦେହରେ ସତେ ଯେମିତି କିଛି ଅପୂର୍ବ ଶକ୍ତି ପଶିଗଲା । ପାଦ ପକେଇ ପକେଇ

ଆଗକୁ ଗ୍ଭଲିଲା । ଗାଁ ପାଖାପାଖି ହେଉ ହେଉ ମୋହନ କହିଲା, 'ଭାଇନା, ତମେ ପଦର ପାଖଦେଇ ଗ୍ଭଲ । ମୁଁ ଗାଁ ଦାଣ୍ଡରେ ଯାଉଛି । ତମେ ବାଡ଼ି ପଟେ ଆସି ଅପେକ୍ଷା କରିଥିବ, ମୁଁ କବାଟ ଖୋଲିଲେ ଭିତରକୁ ଆସିବ ।' ମୋହନ ହାତରୁ ଟର୍ଚ୍ଚଟା ଛଡ଼େଇ ନେଇ ବନ ବାଟ ଭାଙ୍ଗିଗ୍ଭଲିଗଲା ।

ମୋହନ ଗାଁରେ ପହଞ୍ଚିବାପରେ ବସନ୍ତ ସାମଲ ଘର ସାମ୍ନାରେ ପହଞ୍ଚିଯାଇ, କବାଟ ଖଡ଼ ଖଡ଼ କରିଲା । ବସନ୍ତ ବୋଧହୁଏ ଖାଇବସିଥିଲା । ତା ସାନପୁଅ କବାଟ ଖୋଲି ମୋହନକୁ ଘର ଭିତରକୁ ଡାକିଲା । ମୋହନକୁ ଦେଖି ବସନ୍ତ ଖାଇବା ଗ୍ଭଡ଼ିଦେଇ ଉଠିପଡ଼ିଲା । ସତେ ଯେମିତି ଗଳାରେ ତା ଖାଦ୍ୟ ଅଟକି ଗଲା, ତୁଣ୍ଡରୁ କଥା ବାହାରୁନଥିଲା, କାଶି ପକାଇଲା । ମୋହନ ବସନ୍ତର କାନ ପାଖକୁ ଯାଇ କହିଲା, ବାଡ଼ି କବାଟଟା ଖୋଲି ଦେ, ବନଭାଇନା ଜଗିଛି । ବନ ବୋଲି ଶୁଣିବାପରେ ବସନ୍ତ ଦେହରୁ ଝାଳଟେ ବାହାରି ଗଲା । ସେ ମୋହନକୁ ଗ୍ଭହିଁ କହିଲା, 'ତାକୁ ଏଇଠିକୁ କାହିଁକି ଆଣିଲୁ ?' ମୋହନ କହିଲା, 'ଆରେ ହେ, ତାର ଖାଉଛୁ, ଆଉ ତା ନାଁ ଶୁଣିଲେ ତୋ ନାହି ଡେଉଁଚି ? ହଇରେ, ଭୁଲିଗଲୁ ନା କଣ ? ତୋର ଏଇ ଘର ସେଇ ବନେଇ ଦେଇଥିଲା ଟି ।' ବସନ୍ତ ଆଉ କିଛି କହିଥାନ୍ତା, ମୋହନ ତାକୁ ଅଟକାଇ ଦେଇ କହିଲା, 'ତୁ ଆଗ ଯାଇ ବାଡ଼ି କବାଟ ଖୋଲ ।' ବସନ୍ତ କିଛି ଚିନ୍ତା କରିବାପରେ କହିଲା, 'ଭାଇନା ତମେ ବନ ଭାଇକୁ ଧରି ବାଡ଼ିରେ ଗ୍ଭଲ । ଗାଁ ମୁଣ୍ଡରେ ଆମ ଧାନଖଳା ପାଖକୁ । ସେଇଠି ମୁଁ ତମକୁ ଦେଖା ହେବ । ଦେଖିବା କଣ ଗୋଟେ ବ୍ୟବସ୍ଥା କରିବା ।' ମୋହନ ଉଠିବା ପୂର୍ବରୁ କହିଲା, 'ଖାଇବାପାଇଁ ବ୍ୟବସ୍ଥା ଆଗ କରିଦେ । ନହେଲେ ସେ ମରିଯିବ । ଜାଣିଛୁ ସେ ପେଟୁ ଟା ।'

ଅଧ ଘଣ୍ଟାଏ ପରେ ଗାଁ ସ୍କୁଲ୍ ପଛରେ ଥିବା ବସନ୍ତର ଧାନଖଳାରେ ଦଉଡ଼ିଆ ଖଟ ଉପରେ ଶୋଇରହି ବନ ନିଜର ପାଦର କଷ୍ଟ କଥା ଚିନ୍ତା କରୁଥିଲା । ବସନ୍ତ ଖାଇବା ନେଇ ଆସିଲା । ତରତର ହେଇ ସେତକ ଉଦରସ୍ଥ କରିଦେବା ପରେ ବନ ଟିକେ ସୁସ୍ଥ ମନେ କରିଲା ।

ବସନ୍ତ କଣ ଗୋଟେ କହିବ କହିବ ହେଉଥିଲା, ମୋହନ ଠଉରେଇ ଦେଇ କହିଲା, 'ଆରେ କଣ ହେଲା ? କହୁନୁ କଣ କହିବାକୁ ଗ୍ଭହୁଁଛୁ ?' ବସନ୍ତ କହିଲା, 'ନା, ମୁଁ କଣ କହୁଥିଲି କି । ଆମ ଗାଁ ପାଖରେ ପୋଲିସ ଫାଣ୍ଡି ଅଛି, ଯଦି କିଏ କହିଦେବ ଯେ ଭାଇନା ଏଇଠି ଅଛନ୍ତି ବୋଲି, ପୋଲିସ ଝପଟି ଆସି ବାନ୍ଧି ନେଇଯିବେ । ମୁଁ ଗ୍ଭହିଁଲେ ବି କିଛି ସାହାଯ୍ୟ କରିପାରିବିନି । ମୋର ପୁଅଝିଅ ସଂସାର ଅଛି । ସେମାନଙ୍କୁ ଦେଖିବ ନା ଭାଇନାଙ୍କ ସାଙ୍ଗରେ ବନ୍ଧା ହେଇ ଯିବି ? ଆଉ ଯାହା ବି ହେଉ ଏ ଗାଁରେ ଖାସ୍ କାଟିତ ଆଉ ଇଜ୍ଜତ ଅଛି, ସେତକ ତଳେ ପଡ଼ିଯିବ ।' ବସନ୍ତର କଥା ଶୁଣିବାପରେ ବନର ପାଦତଳୁ ମାଟି ଖସିଗଲା ପରି ଲାଗୁଥିଲା ହେଲେ ନିଜକୁ ସମ୍ଭାଳି ନେଇ ସେ ନିରବ ରହିବାକୁ ଶ୍ରେୟସ୍କର ମଣିଲା । ଯେତେବେଳେ ସମସ୍ତେ ଏକୁଟିଆ କରିଦେଇ ଗଲେ, ବସନ୍ତ ବା କାହିଁକି ତାକୁ

ସାହାଯ୍ୟ କରିବ । ସେ କିନ୍ତୁ ସେତେବେଳକୁ ଉଠି ଚାଲିବା ଅବସ୍ଥାରେ ନଥିଲା । ସନ୍ଧ୍ୟାସାରା ଅନ୍ଧାରରେ ବଣପାହାଡ଼ ରାସ୍ତାରେ ଚାଲି ଚାଲି ତା ପାଦ ଦୁଇଟା ଫୁଲି ଗଲାପରି ଲାଗୁଥିଲା । ସେ ଉଠି ଠିଆ ହେବା ଭଳି ଅବସ୍ଥାରେ ନଥିଲା । ମୋହନ ବିନର ଅବସ୍ଥା ଦେଖି କହିଲା, 'ବସନ୍ତ, ତୁ ଯା । ଘରକୁ । ଆମେ ଏଠି ଆଉ ଟିକେ ବିଶ୍ରାମ କରିବୁ, ଆଉ ତା ପରେ ଚାଲିଯିବୁ । ଯଦି କିଛି ଅସୁବିଧା ହୁଏ, ତ ତୁ କିଛି ଜାଣିନୁ ବୋଲି କହିଦେବୁ ।' ବସନ୍ତ ଖାଇବାପାଇଁ ଆଣିଥିବା ବାସନ ପତ୍ର ସବୁ ଧରି ସେଇଠୁ ତୁରନ୍ତ ଚାଲିଗଲା । ମୋହନ ପାଳ ଗଦା ପାଖରେ ଘୁମେଇ ପଡ଼ିଲା । ଆକାଶରେ ଥିବା ଅଗଣିତ ତାରା ମାନଙ୍କୁ ଦେଖି ଦେଖି ବିନ କେତେବେଳେ ଶୋଇଯାଇଛି ଜାଣିପାରିଲା ନାହିଁ, ଆଖି ଖୋଲିବା ବେଳକୁ ଦିନ ହୋଇଗଲାଣି । ଏଣେ ତେଣେ ଦେଖିଲା, ମୋହନ କେଉଁଠି ଦେଖାଯାଉ ନଥିଲା ।

ବିନକୁ ଭାରି ଏକା ଏକା ଲାଗୁଥିଲା । ମନରେ ଅନେକ ଭୟ । କଣ କରିବ ? କେଉଁଠିକୁ ଯିବ । ଦୀର୍ଘ ଦୁଇ ମାସ ହେଲାଣି ଏମିତ ଚୋର ପରି ଘୁରି ବୁଲୁଛି । କେବେ କେଉଁ ଗାଁରେ ତ କେବେ କୋଉ ଜଙ୍ଗଲରେ ଶୋଇ ଶୋଇ ଦିନ ବିତୁଛି । ମୋହନ ତା ସହ ଛାଇ ପରି ଥିଲା । ମୋହନକୁ ଛାଡ଼ିଦେଲେ ସମସ୍ତେ ତାକୁ ଏକା କରିଦେଇ ଚାଲିଗଲେ । ସେ ତ ସବୁବେଳେ ସମସ୍ତଙ୍କ ଭଲ ହିଁ ଚାହିଁଥିଲା । କେବେ କାହାକୁ ଆହତ କରିବା ଭଳି କଥା ପଦଟିଏ ବି କହିନଥିଲା । ହେଲେ ଓଡ଼ିଆରେ କଥାପଦେ ଅଛି, ସମ୍ପଦ ବେଳେ ସର୍ବେ ସଖା, ବିପଦେ ନ ଦିଅନ୍ତି ଦେଖା । ବିନର ଜୀବନରେ ଏହା ସମ୍ପୂର୍ଣ୍ଣ ସତ୍ୟ ବୋଲି ପ୍ରମାଣିତ ହୋଇଛି । ତା ସହ ଆଜୀବନ ଛାଇ ଭଳି ରହିଥିବା ସୁଲୋଚନା ମଧ୍ୟ ହାତ ଛାଡ଼ିଦେଇ ଚାଲିଯାଇଥିଲା । ପୁଅଝିଅ କିଏ କୁଆଡ଼େ ଗଲେ ହିସାବ ସେ ରଖିନି । ସେମିତିରେ ବି ସୁଲୋଚନା ବଞ୍ଚିଥାଉ ଥାଉ ବଡ଼ପୁଅ ହରି ଘର ଛାଡ଼ିଦେଇ ଚାଲିଯାଇଥିଲା । ଅଜାତିରେ ବାହା ହେଇଛି ବୋଲି ସୁଲୋଚନା ତାକୁ ଘରେ ପୁରେଇ ଦେଇନଥିଲା । ହେଲେ ବିନ ବେଳଅବେଳରେ ହରିକୁ ସାହାଯ୍ୟ କରିଥିଲା । ତା ପାଇଁ ଘର ତୋଳେଇ ଦେଇଥିଲା, କିନ୍ତୁ ବିପଦ ପଡ଼ୁ ପଡ଼ୁ ତୁମେ କିଏ ମୁଁ କିଏ କହି ସେ ବି କବାଟ କିଳିଦେଲା । ଝିଅକୁ ଭଲ ଘର ଦେଖି ବିବାହ ଦେଇଥିଲା, କିନ୍ତୁ ଯେଉଁଦିନ ବିପଦ ଆସିଲା, ସେଦିନ ଝିଅର ଶଶୁର ଘର ସବୁ ସମ୍ପର୍କ କାଟିଦେଲେ । ଝିଅ ବି ଗଲା । ସାନ ପୁଅଟା ବେକାର ହେଇ ବୁଲୁଥିଲା, ସୁଲୋଚନା ତା ପାଇଁ ସବୁବେଳେ ଚିନ୍ତାରେ ରହି ରହି ଚାଲିଗଲା । କିନ୍ତୁ ସେ କେବେ କେଉଁଠି ଦେଖାଦେବ କେହି କହିପାରିବେନି । ଯେବେ ବି ଆସେ ହାତ ଭର୍ତ୍ତିକରି ଟଙ୍କା ନେଇ ଯାଏ । ବିନ ବି କେବେ କୁଣ୍ଠା କରିନି । ନିଜର ରକ୍ତ, ଅଭାବରେ କାହିଁକି ରହିବ । ସମସ୍ତଙ୍କୁ ଭଲରେ ରଖିବା ପାଇଁ ତ ସେ ସବୁ କରିଥିଲା । କିନ୍ତୁ କିଏ ଜାଣିଥିଲା ଯେ ହସ ଖୁସିରେ ଚାଲୁଥିବା ପରିବାର ଦିନେ ଏମିତ ଅବସ୍ଥାରେ ଆସି ପହଞ୍ଚିବ । ବିନ ଖଟିଆରୁ ଉଠି ଏଣେ ତେଣେ ଦେଖିଲା । ମୋହନକୁ କେଉଁଠି

ଦେଖିବାକୁ ପାଇଲା ନାହିଁ । ଅସହାୟ ଭାବରେ ସେ ଏଣେତେଣେ ଦେଖୁ ଦେଖୁ ଦୂରରୁ ମୋହନକୁ ଆସୁଥିବାର ଦେଖି ତା ଦେହରେ ପ୍ରାଣ ଆସିଲା ।

ଦିନ ହୋଇଯାଇଥିଲା । ଏବେ ବାହାରକୁ ବାହାରିଲେ ବିପଦ । କିଏ ଯଦି ଦେଖିବ କିଣ ହେବ? ପୋଲିସ ଧରିଲେ କଥା ନିଆରା, ହେଲେ ଲୋକ ଦେଖିଲେ ଅବସ୍ଥା ଅସମ୍ଭାଳ ହୋଇଯିବ । ମୋହନ ବଗିର କରି ଶଗଡ଼ ଚକରେ ଲାଗିଥିବା କଳା ଆଣି ବନର ମୁହଁରେ ବୋଳି ପକାଇଲା । ହି ହି କହୁ କହୁ, ମୋହନ ବନକୁ ସମ୍ପୂର୍ଣ୍ଣ କଳା କରିଦେଲା । ବନ ବିରକ୍ତ ହେଉଥିଲା କିନ୍ତୁ ମୋହନ ନିଜ ମୁହଁରେ ବି କଳା ବୋଳିଦେଇ କହିଲା, 'ଆଉ କିଏ ଚିହ୍ନିପାରିବନି ।' ସେମାନେ ସେଇଠୁ ବାହାରିଲେ ।

ରଣଗାଁ ଡେଇଁଲେ, ଆଉ ଗୁଳିଶି କିଲୋମିଟର ଗଲେ ଓଡ଼ିଆ ବାହାରକୁ ଯିବା ପାଇଁ ବାଟ ମିଳିଯିବ । ଦୁଇ ତିନିଦିନର ପରିଶ୍ରମ କରିବାପରେ ଓଡ଼ିଶା ସୀମା ପାଖାପାଖି ହେଉଥିବା ସମୟରେ ହିଁ ପୋଲିସ ହାତରେ ଧରାପଡ଼ିଗଲେ ସେମାନେ । ଦୀର୍ଘ ଦୁଇମାସ ଧରି ଯେଉଁ ଭୟରେ ସେମାନେ ଲୁଚି ଲୁଚି ବୁଲୁଥିଲେ ଆଜି ଆଖି ସାମନାରେ ତାହା ଦେଖିବାପରେ ବନର ଚେତା ପଳାଇଗଲା । ଚେତା ଫେରିବା ବେଳକୁ ସେ ହସପିଟାଲରେ ଥିଲା । ଗୁରିପାଖରେ ପୋଲିସ ଆଉ ଓକିଲ ଗହଳି । ପୋଲିସ କେସ୍, ଅଦାଲତ ସବୁ ଏବେ ଦେଖିବାକୁ ପଡ଼ିବ । ବନ ଆଖି ବୁଜିଦେଇ ଶୋଇବାକୁ ଚେଷ୍ଟା କରୁଥିଲା । ସେଦିନର କଥା ସବୁ ତାକୁ ମନେ ପଡୁଥିଲା ।

X X X X X X

ଦଶବର୍ଷ ତଳର କଥା । ବନର ଗାଁରେ ଭଲ ଗୃହବାସ ହେଉଥିଲା । ଘରେ ସୁଗୃହିଣୀ ସୁଲୋଚନା, ବଡ଼ପୁଅ ହରି, ସାନପୁଅ କାଳୁ, ଝିଅ ଲଳିତାକୁ ନେଇ ସେ ଖୁସିରେ ଥିଲା । ଦିନକୁ ଦିନ ପିଲାମାନେ ବଡ଼ ହେଉଥିଲେ ସେମାନଙ୍କ ଦାବୀ ପୁରଣ କରିବାପାଇଁ ସବୁ ଚେଷ୍ଟା କରିବା ସତ୍ତ୍ୱେ ସେ ନିରୁପାୟ ହୋଇ ପଡ଼ୁଥିଲା । ସବୁ ସୁଖ ଦୁଃଖରେ ସେ ପୁରୀରେ ଯାଇ ମହନ୍ତଙ୍କ ଶରଣରେ ଯାଏ । ଏମିତି ଥରେ ଯାଇଥିବା ବେଳେ ମହନ୍ତ ମହାରାଜଙ୍କ ଜଣେ ଶିଷ୍ୟ କହିଲେ ତୁମ ଗାଁରେ ମନ୍ଦିରଟିଏ ନିର୍ମାଣ କରି ଦେଖ, ତୁମର ସବୁ ଦୁଃଖ ଗୁଲିଯିବ । ବନ ଅର୍ଥାଭାବର କାରଣ ଦେଖାଇବା ପରେ ବାବା କହିଲେ, ମନ୍ଦିର ନିର୍ମାଣ କରିବା ସଂକଳ୍ପ କରି ଦେଖିବ ଆପେ ଆପେ ମନ୍ଦିର ହୋଇଯିବ । ସେମିତି ହେଲା ମଧ୍ୟ । କିଏ ସିମେଣ୍ଟ ଦେଲା ତ କିଏ ଇଟା, କିଏ ଠାକୁରଙ୍କ ମୂର୍ତ୍ତି ଦେଲା । ଏମିତି ଦେଖୁ ଦେଖୁ ମନ୍ଦିର ନିର୍ମାଣ ହୋଇଗଲା । ଗାଁ ଲୋକ ବହୁତ ବାଃ ବାଃ କଲେ । ସବୁ ଠିକ୍ ଗୁଲିଥିଲା । ମନ୍ଦିର ପ୍ରାଙ୍ଗଣରେ ଭୋଜିଭାତ ହେଉଥିଲା ସେଥିରୁ କିଛି କିଛି ଆୟ ହେଉଥିଲା, ମେଳା ମଉଛବ ସମୟରେ ଅଧିକ ମିଳୁଥିଲା ।

ବର୍ଷ କେଇଟାରେ ବନ ଗାଁରେ ସାହୁକାର ହୋଇଯାଇଥିଲା । ଭଲମନ୍ଦରେ ସମସ୍ତେ ବନ ପାଖରେ ଶରଣ ପଶିଲେ । ସେ ବି କାହାକୁ ନିରାଶ କରିଲା ନାହିଁ । ଏହି ସମୟରେ ଜମିବାଡ଼ି କାରବାର କରୁଥିବା ଏକ ସଂସ୍ଥା ସହ ସଂପୃକ୍ତ ହୋଇଥିଲା ବନ । ଲୋକଙ୍କୁ ସ୍ୱଳ୍ପ ଖର୍ଚ୍ଚରେ ଜମିଖଣ୍ଡେ ଯୋଗାଇବା ଯୋଜନାରେ ସାମିଲ ହୋଇଗଲା । ବର୍ଷେ ଦୁଇବର୍ଷରେ ଟଙ୍କାକୁ ଦୁଇଗୁଣା କରିଦେବା ଭଳି ବ୍ୟବସ୍ଥା ଥିବା କଥା ଜାଣିବା ପରେ ସେ ନିଜେ ଓ ନିଜ ପରିଚୟ ଅନେକ ଲୋକଙ୍କୁ ଏଥିରେ ଟଙ୍କା ଖଟାଇବାକୁ ପ୍ରବର୍ତ୍ତାଇଥିଲା । ପ୍ରଥମେ ପ୍ରଥମେ ନିଜ ଗାଁ ପାଖ ସହରରେ ଅଫିସ ଖୋଲି ଲୋକଙ୍କୁ ଘର ଉପଯୋଗୀ ଜମି ଯୋଗାଇଦେଲା । କୋଲକାତାର କମ୍ପାନୀ । ବନ କିନ୍ତୁ କମ୍ପାନୀର ସବୁକିଛି ଥିଲା । ବନର ଚେହେରା ଆଉ ପ୍ରତିଷ୍ଠାକୁ ଦେଖି କମ୍ପାନୀ ବହୁତ ଲାଭ ପାଉଥିଲା । ଏଇ ସମୟରେ ବନର ପୁଅ, ଝିଅ ବାହା କରିଥିଲେ । ସବୁ ଠିକ୍ ଚାଲିଥିବା ବେଳେ ଦିନେ ହଠାତ୍ କୋଲକାତା କମ୍ପାନୀରୁ କୌଣସି ଉତ୍ତର ସେ ପାଇଲା ନାହିଁ । ଫୋନ କଲେ ନମ୍ବର କାହାକୁ ଦିଆଯାଇନାହିଁ ବୋଲି କହିଲା । ସେତେବେଳକୁ ବନ ନିଜ ଅଞ୍ଚଳରେ ଅନ୍ୟୁନ ଚାରି ପାଞ୍ଚଶହ ଲୋକଙ୍କଠାରୁ ଲକ୍ଷଲକ୍ଷ ଟଙ୍କା ନେଇ ଯାଇଥିଲା । ଉପର ଅଫିସରୁ କୌଣସି ଉତ୍ତର ନ ପାଇବା କଥା ସେ ଖୋଲି କାହାକୁ କହିପାରୁନଥିଲା, ତେଣୁ ସେ ନିଜ ଅଫିସର ପାର୍ଟନର ମୋହନ ସହିତ ମିଶି କୋଲକାତା ଅଫିସ ଯାଇଥିଲା, ସେଠି ଦେଖିଲା ମୁଖ୍ୟ ଅଫିସ ଯେଉଁଠି ଥିଲା ସେଇଠି ଆଉ ଗୋଟିଏ ନୂଆ ଅଫିସ ଅଛି । ପୁରୁଣା ଅଫିସ ତ ବର୍ଷେ ହେଲା ବନ୍ଦ ହେଇଗଲାଣି ବୋଲି ସେ ଜାଣିବାକୁ ପାଇଲା । ବନକୁ ଚାରିଆଡ଼େ ଅନ୍ଧାର ଦେଖାଗଲା । କଣ କରିବ କିଛି ବୁଝି ପାରିଲାନାହିଁ । ଘରକୁ ଫୋନ କରି ସବୁ କଥା କହିବା ପରେ ସୁଲୋଚନା ହୃଦଘାତରେ ମୃତ୍ୟୁବରଣ କରିଥିଲା, କେତେ ଅଭାଗା ଥିଲା ସିଏ ସେ, ସୁଲୋଚନାର ମୁହଁରେ ନିଆଁଟିଏ ଦେବାର ଦେଖିପାରିଲାନି । ସେଇଦିନଠାରୁ ମୋହନ ସହ ମିଶି ସେ ଫେରାର ହୋଇଗଲା ।

ଦୁଇମାସ ବଣ ଜଙ୍ଗଲ ବୁଲିବା ପରେ ସେ ଏବେ ଧରାପଡ଼ିଥିଲା । ହସପିଟାଲ ବାହାରେ ଲୋକମାନଙ୍କ କରୁଣ ଚିତ୍କାର ସେ ଶୁଣିବାକୁ ପାଉଥିଲା । କିଏ କହୁଥିଲା, ବେଇମାନଟାକୁ ଆମକୁ ଦେଇ ଦିଅ ଆମେ ହିସାବ କରିବୁ, ତ ଆଉ କିଏ କହୁଥିଲା ଏମିତି ଲୋକକୁ ଜିମ ଗରମ ତେଲରେ ପକେଇ ମାରିବ । ସବୁ ନିଜ ଆତ୍ମୀୟ ସ୍ୱଜନ ଥିଲେ, କେହି ବି ପର ନଥିଲେ । ନିଜ ଗାଁଲୋକଙ୍କ ଝାଳବୁହା ଧନକୁ ନେଇ ସେ କାହା ହାତରେ ଟେକି ଦେଇଥିଲା ତାହା ସେ ଜାଣିନଥିଲା । ପୋଲିସ ମହକମାରୁ ଲୋକ ଆସୁଥିଲେ ଅଜସ୍ର ପ୍ରଶ୍ନ ପଚାରୁଥିଲେ । ତା ପାଖରେ କିଛି ଉତ୍ତର ନଥିଲା । ମକଦ୍ଦମା, ଅଦାଲତ ସବୁ ଚାଲିଲା । ଜେଲରେ କୋଠରୀରେ ବସି ବନ ମୋହନକୁ କହୁଥିଲା, ମୋର କଣ ଦୋଷ ଥିଲା ରେ ଭାଇ ? ମୁଁ

କାହିଁକି ହରଡ଼ଘଣାରେ ପଡ଼ିଲି । ମୋହନ ନିରବ ଥିଲା । ଜୀବନପ୍ରତି ବିତୃଷ୍ଣା ଆସିଯାଉଥିଲେ ସୁଦ୍ଧା ସେ ନିଜେ ନିଜ ଜୀବନକୁ ଶେଷ କରିଦେବାଭଳି ସାହାସ ନଥିଲା । ଯେଉଁ ମନ୍ତ୍ରୀନେତା ମାନେ ତା ପାଖରେ ଗ୍ଜାଇଭଳି ରହୁଥିଲେ ସେମାନେ ସବୁ ସତେ ଯେମିତି କୁଆଡ଼େହଜି ଯାଇଛନ୍ତି । ସେ ସେମିତି ଜଣେ ମନ୍ତ୍ରୀଙ୍କ ନାଁ କହିଦେଇଥିଲା ବୋଲି ପୋଲିସ ଅଫିସର ବାବୁ ଜଣେ କହିଲେ, ଏବେ ବ୍ରହ୍ମା ଆସିଲେ ବି ତୁମକୁ ରକ୍ଷା କରିପାରିବେନି । ସତରେ ଜେଲରେ କୋଠରୀରେ ବସି ବସି ସେ ଗୀତା ପଢୁଥିଲା । ଯାହା ସେ ନିଜ ଜୀବଦ୍ଦଶାରେ କେବେ ପଢିବାର ସୁଯୋଗ ପାଇନଥିଲା । ଏବେ ସେ ପଢୁଥିଲା ଆଉ ବୁଝିବାକୁ ଚେଷ୍ଟା କରୁଥିଲା, ଆପଣା କଲା କର୍ମମାନ... ର ଅର୍ଥ ଆଉ ଅନର୍ଥ କଣ ?

# ଆମ୍ବତୋଟାର ମୋହ

ଶ୍ରୀକାନ୍ତ ମିଶ୍ର



ଛୁଟିରେ ଗାଁକୁ ଯିବାର ଥିଲା, ଭାବିଲି ଏଥର ଫେବୃଆରୀରେ ଗାଁକୁ ଯିବି । ଗାଁ ବୁଲା ସହ ଭାଲେଣ୍ଟାଇନ୍ ଡ଼େରେ ତୋ ସହ ଭେଟ ବି ହେବ । କିନ୍ତୁ ତୋତେ ଆଗରୁ ନ ଜଣାଇ ଗାଁକୁ ବାହାରିଲି, ବ୍ରହ୍ମପୁରରୁ ତୋ ପାଇଁ ଭଲ ଗିଫ୍ଟ ଗୋଟେ କିଣିଲି । ତୁ ସବୁବେଳେ କହୁଥିଲୁ ନା, ଏଇ ଆମ୍ବତୋଟା ଥିବ ମୁଁ ଥିବି ଆଉ ତୁ ଥିବୁ । ଆମେ ରାଧାକୃଷ୍ଣଙ୍କ ଭଳି ଏଇ ଆମ୍ବଗଛକୁ କଦମ୍ବଗଛ ଭାବି ଏଇ ଗଛମୂଳେ ବସି ରହିଥିବା । ସେଥିପାଇଁ ରାଧାକୃଷ୍ଣଙ୍କ ଗୋଟେ ଯୁଗଳମୂର୍ତ୍ତୀ ଆଣିଥିଲି । ତୋ ପାଇଁ ।

ତୁ କହୁଥିଲୁ ନା, ମୋତେ ସବୁବେଳେ ମନେ ପକାଉ ବୋଲି, ହଁ ମୁଁ ବି ତୋତେ ବହୁତ ମନେ ପକାଏ । ତୁ କଣ ଭାବୁଛୁ, ସହରରେ ରହି ମୁଁ ତୋତେ ଭୁଲି ଯାଇଥାନ୍ତି ? ସେଇଟା କଣ ଏ ଜନ୍ମରେ ସମ୍ଭବ ? ତୋ ପାଇଁ ସପନ ନ ଦେଖିଲେ ମୋ ରାତି ପାହେନି ପରା । ମୋ ମନ ବି ପ୍ରେମରତନ ଫିଲ୍ମର ସଲମାନ ଖାନ ପରି ଖୁସିଥିଲା । ଗାଁ ବସରେ ଗାଁକୁ ଆସିବେ ବେଳେ ମୁଁ ଖାଲି ମନେ ମନେ ଗୁଣୁ ଗୁଣୁ ହେଉଥିଲି, 'ଆଜ୍ ଉନ୍‌ସେ ମିଲ୍‌ନା ହେ ହମେଁ...' ।

ଗାଁ ବସଷ୍ଟାଣ୍ଡରେ ପହଞ୍ଚିଲି । ତତ୍‌କ୍ଷଣାତ ତୋତେ ଫୋନ୍ କଲି । ତୋତେ ଚମକାଇ ଦେବାର ଅଭିପ୍ରାୟ ଥିଲା । ପଚାରିଲି;

- ଆଲୋ, କୋଉଠି ଅଛୁ ?

- ଘରେ ଅଛି । ଆମ୍ବତୋଟା ଆଡ଼େ ଯାଉଛି ।

- ଏତେ ଖରାବେଳେ ଆମ୍ବତୋଟାକୁ ? କାହିଁକି ଯାଉଛୁ ?

- ସେଇ ତୋଟାରେ ସେଇ ଆମ୍ବଗଛ ମୂଳରେ କିଛି ସମୟ ବସିଗଲେ ମନ ହାଲୁକା ହେଇ ଯାଉଛି । ଏମିତ ନ ଗଲେ ମନ ଭଲ ଲାଗେନ ନା ।

- ଓହ୍, ତୁ ଆମ୍ବ ଗଛକୁ ଏତେ ମନେ ରଖିଛୁ ?

- ତୁମେ ସିନା ସହରରେ ମୁଁ ତ ଏଇ ଗାଁରେ ଅଛି । ଏଇ ଗାଁର ପାଣିପବନ ମାଟିକୁ ଭୁଲିଯିବ କେମିତ ?

ମନ କୁଣ୍ଢେମୋଟ ହୋଇଗଲା । ବସଷ୍ଟାଣ୍ଡରୁ ସିଧା ଗ୍ଲଲି, ସେଇ ଆମ୍ବତୋଟା ଆଡ଼କୁ । ଏତେ ଦୂରରେ ଥିଲେ ବ ସେ ମୋ ଭଲପାଇବାର ପ୍ରତ୍ୟେକ ସାକ୍ଷୀକୁ ନଜର କର ପାରଛି । ଆମ୍ବତୋଟାର ସେଇ ଗଛକୁ ସେ ଏତେ ଭଲ ପାଇଛି ।

ଗାଁ ଦାଣ୍ଡ ପାରହେଲେ, ସରୁଆ ନାଳ କଡ଼େ କଡ଼େ କିଛି ବାଟ ଗଲେ ଆମ ପାଖ ଗାଁ ଆଉ ଆମ ଗାଁ ମଝିରେ ପଡ଼େ ଏଇ ଆମ୍ବତୋଟା । ପାଦ ଚପି ଚପି ହଠାତ୍ ତାକୁ ଚମକାଇ ଦେବାପାଇଁ ଗ୍ଲୁଥିଲି । ଆମ୍ବଗଛ ଗହଳ, ଫେବୃଆରୀରେ ମଧ ବଉଳ ଫୁଲରେ ଲଦ ହୋଇଥିବା ଗଛ ସବୁରୁ ଆସୁଥିବା ବାସ୍ନାରେ ବଭୋର ମୁଁ ଧିରେ ଧିରେ ସେଇ ଆମ ଚରପରଚତ ଆମ୍ବ ଗଛ ଆଡ଼କୁ ଅଗ୍ରସର ହେଉ ହେଉ ଅଟକ ଯାଇଥିଲି ।

ଏ କଣ, ସେ ତ ସେଇ ଗଛ ମୂଳରେ ହିଁ ବସିଛି, ତାର ସେଇ ସୁନ୍ଦର ଗୋଲାପୀ ରଙ୍ଗର ଶାଢ଼ୀ ପିନ୍ଧିଛି, ହେଲେ ଏ କଣ ଦେଖୁଛି ? ତା କୋଳରେ ମୋ ମୁଣ୍ଡ ନାହିଁ, ଆମ ଗାଁ ପ୍ରଦୀପର ମୁଣ୍ଡକୁ ସସ୍ନେହ ସେ ଆଉଁସି ଦେଉଛି ? ପାଦ ଆଉ ଆଗକୁ ବଢ଼ି ପାରଲା ନାହିଁ । ହାତରେ ଧରଥିବା ଯୁଗଳ ମୂର୍ତ୍ତୀ ସେଇଠି ହାତରୁ ପଡ଼ି ଚୁରମାର ହେଉଥିଲା ଆଉ ମୋ ମନର ସ୍ୱପ୍ନ ମଧ । ପଛରୁ କେହ ଜଣେ ଅପରଚତା ଡାକ ଦେଉଥିବା ଭଳ ମନେ ହେଉଥିଲା ଆଉ ମୁଁ ତଡ଼ିତ୍ ବେଗରେ ସେଠାରୁ ବସଷ୍ଟାଣ୍ଡ ଆଡ଼କୁ ଗ୍ଲଲି ଆସୁଥିଲି । ମନରୁ ଆମ୍ବତୋଟାର ମୋହ ଲଭ ଯାଇଥିବା ଭଳ ମନେ ହେଉଥିଲା ।

# ମୋତେ ଯା’ ମରଣ ହେଉନ !

ଡା ସୌମ୍ୟରଞ୍ଜନ ମିଶ୍ର



ପାରବାରକ ସମସ୍ୟାରେ ଉବୁଟୁବୁ ହୋଇ ନାକରେ ପାଣି ପିଉଥିବା ପରବାରର କୌଣସି ସଦସ୍ୟ ବା ଦୁଃସାଧ ରୋଗରେ ପଡ଼ି ଅସହ୍ୟ ଯନ୍ତ୍ରଣାରେ ଛଟପଟ ହେଉଥିବା ରୋଗୀ ବେଳେ ବେଳେ ପରମାତ୍ମାଙ୍କୁ ଏଭଳ କଛ ମାଗିବସନ୍ତ, ଯାହା ତାଙ୍କର ସାଧର ବାହାରେ । ମରଣ ବଧିନର୍ଦ୍ଧିଷ୍ଟ । ସମୟ ପୂର୍ବରୁ ଆତ୍ମା ଶରୀର ତ୍ୟାଗ କରବା ଅସମ୍ଭବ । ତଥାପି ମଣିଷ କହ ଦେଉଥାଏ - ଆଉ ସହ ହେଉନାହିଁ । ମୋତେ ଯାହା ମରଣ ହେଉନ, ଯମ ମୋତେ ନେଉନ କାହିଁକ ? ସତରେ କଣ ମଣିଷ ଏତେ ସହଜରେ ମରଣ ମାଗିପାରେ ? ଅପରପକ୍ଷେ ଯଦ ପରମାତ୍ମା ତାଙ୍କ କ୍ଷମତାର ଅପବ୍ୟବହାର କର ମରଣକୁ ଟିକେ ପଛକୁ ଘୁଞ୍ଚାଇ ଦେଲେ, ତା’ହେଲେ କଥା ସରଲ୍ । ତେଣିକ - ଦଣ୍ଡେ ହମିଷେ ଥିଲେ ପ୍ରାଣ, କାହାକୁ ମାର କାହାକୁ ହାଣ ।

ଗତ କଛ ଦନଧର ଭାରତର ମୁଷ୍ଟିମେୟ ସ୍ୱନାମଧନ୍ୟ (ଭାରତରେ ଥିବାରୁ) ଲୋକ ଅନ୍ୟମାନଙ୍କୁ ସହପାରୁ ନାହାନ୍ତ ବୋଲ ଗଣମାଧମରୁ ଆମ୍ଭେ ଜାଣିବାକୁ ପାଇଲୁ । ନୋହଲେ, ଆମ୍ଭପର ସାଧାରଣ ଲୋକ, ଏମାନଙ୍କ ଗ୍ଧଇ ପର୍ଯ୍ୟନ୍ତ ମାଡ଼ିନାହୁଁ, ଆଉ ନାହ ପଛରେ କ’ଣ ଅଛ ଆମ୍ଭେ କେମିତ ଜାଣନ୍ତ । ପରସ୍ଥିତ ଏମିତ ହୋଇଛ ଯେ, ଏମାନେ ସରକାର ପ୍ରଦତ୍ତ ଉପାଧି ଆଉ ପୁରସ୍କାର ସବୁ ଫେରଇବାରେ ଲାଗିଛନ୍ତ । କଛ ବୁଦ୍ଧିଜୀବ ଏହାର ତୀବ୍ର ବରୋଧ ମଧ କରୁଛନ୍ତ । ଅବଶ୍ୟ ଏବେ ପରସ୍ଥିତ ସାମାନ୍ୟ ସୁଧୁରଯାଇଛ । ଆମ୍ଭର ଏହ ତର୍କ ଭତରକୁ ପଶିବାର ସ୍ପୃହା ନାହିଁ, କମ୍ବା ସମୟ ମଧ ନାହିଁ । ଆମ୍ଭେ ନରୋଳା କର୍ମଜୀବ । କେବଳ ଆଶଂକା କରୁଛୁ - ଉପାଧି ଆଉ ପୁରସ୍କାର ଫେରଇବାଟା ପରମାତ୍ମାଙ୍କୁ ମରଣ ମାଗିବା ପର କଥା ନୁହେଁ ତ ?

କଥାଟା ଯାହା ବି ହେଉନା କାହିଁକି, ଏଥିପାଇ ଅସୁବିଧା ଭୋଗୁଛନ୍ତି ବିଭିନ୍ନ ସରକାରୀ ଚାକିରୀ ପାଇଁ ପ୍ରବେଶିକା ପରୀକ୍ଷା ଦେଉଥିବା ଯୁବକଯୁବତୀମାନେ । ସେମାନଙ୍କଠାରୁ ଅଧିକ ଅସୁବିଧା ଭୋଗୁଛନ୍ତି ପ୍ରଶ୍ନପତ୍ର ତିଆରି କରୁଥିବା ତଥ୍ୟଜୀବି ମାନେ । କାରଣ ସରକାରୀ ଚାକିରୀପାଇଁ ଉଦ୍ଦିଷ୍ଟ ପ୍ରବେଶିକା ପରୀକ୍ଷାରେ ସରକାରଙ୍କ ପ୍ରଦତ୍ତ ସମ୍ମାନ, ଉପାଧି ଉପରେ ପ୍ରଶ୍ନ ଗୋଟିଏ ଦୁଇଟି ନିଶ୍ଚୟ ଆସିଥାଏ । କିଏ କେତେବେଳେ ଅସହିଷ୍ଣୁତା ଭୋଗ କରିବା ଏବଂ ସମ୍ମାନ ଫେରାଇବ ତାହା କଳନା କରିବା ମୁସ୍କିଲ । ଏଣେ ପ୍ରଶ୍ନ ଭ୍ରମାତ୍ମକ ହେଲେ ସବୁ ପରୀକ୍ଷାର୍ଥୀଙ୍କୁ ମିଳିଯିବ ଦୟାଭିତ୍ତିକ ନମ୍ବର ଆଉ ଚୟନ ହୋଇପାରିବ ନାହିଁ, ତଥ୍ୟ ମନେ ରଖୁଥିବା ଯୋଗ୍ୟ ବ୍ୟକ୍ତିର ।

ଏବେ ନୂଆବର୍ଷରୁ ପୁଣି କେନ୍ଦ୍ର ସରକାର ତଳ ପାହ୍ୟାର ସରକାରୀ ଚାକିରୀପାଇଁ ସାକ୍ଷାତକାର ବ୍ୟବସ୍ଥା ଉଚ୍ଛେଦ କରିଦେଇଛନ୍ତି । ଧିରେ ଧିରେ ରାଜ୍ୟ ସରକାର ମଧ୍ୟ ଏହି ବ୍ୟବସ୍ଥା ଲାଗୁ କରିପାରନ୍ତି । ଉଦ୍ଦେଶ୍ୟ ଏହା ଯେ, ତଳ ପାହ୍ୟାର କର୍ମଚାରୀଙ୍କର ଚରିତ୍ର ଓ କାର୍ଯ୍ୟଦକ୍ଷତା ଦୁଇ ମିନିଟର ସାକ୍ଷାତକାରରେ ଜଣାପଡ଼ିବା ଅସମ୍ଭବ । ତେଣୁ ଏହି ବ୍ୟବସ୍ଥା ଉଠାଇଦେବା ଜରୁରୀ । କିନ୍ତୁ ସରକାର ମହାଭାଗ ଅବଶ୍ୟ ଜାଣିଛନ୍ତି, ସାକ୍ଷାତକାର ଏକ ବାହାନା ମାତ୍ର । ଯୋଗ୍ୟପ୍ରାର୍ଥୀ ତ ସୁପାରିଶରେ ହିଁ ଚୟନ ହୋଇଥାଏ । ଏବେ କେବଳ ଚୟନ କର୍ତ୍ତାଙ୍କୁ ସୁବିଧା ହେବଯେ ସେମାନେ 'ଲିଖିତ ପରୀକ୍ଷାରେ ଉପରୁ ଯାହା କରିହେବ' କହି ଖସିଯିବେ । ଆଉ ଉପରର ଉପୁରୀ ସଂଗଠିତ ହୋଇ ନିଶ୍ଚୟ ବଢିବ ବୋଲି ଆମେ ଭବିଷ୍ୟବାଣୀ କରୁଛୁ ।

ଏବେ ପୁଣି ସରକାରୀ ଚାକିରୀଆଙ୍କ ଉପରେ ଘିଅ ମହୁ ଢାଳିଛନ୍ତି ବେତନ କମିସନ । ସବୁ ସରକାରୀ କର୍ମଚାରୀ, ଯେଉଁମାନେ ନିଶ୍ଚିତ ଭାବରେ ମଧ୍ୟବିତ୍ତ, ଏଣିକି ପାଇବେ ଆହୁରି ମୋଟା ବେତନ । ସରକାରୀ କର୍ମଚାରୀଙ୍କୁ ମଧ୍ୟବିତ୍ତ କହିବାର କାରଣ - ଏ ପର୍ଯ୍ୟନ୍ତ ଗୋଟିଏ ହେଲେ ଧନୀ ସରକାରୀ କର୍ମଚାରୀ (ଆୟ ବହିର୍ଭୂତ ସମ୍ପତ୍ତିଥିବା ଅଭିଯୋଗରେ ଧରାପଡ଼ିଥିବା କର୍ମଚାରୀଙ୍କୁ ବାଦ ଦେଇ) ଆମ୍ଭ ନଜରକୁ ଆସିନାହାନ୍ତି । ପାଠକେ ପାଇଲେ ନିଶ୍ଚୟ ଜଣାଇବାକୁ ଅନୁରୋଧ । ବେତନ ଯେତେ ବଢ଼ିଲେ ସୁଦ୍ଧା ମଧ୍ୟବିତ୍ତକୁ ସବୁବେଳେ ନିଅଣ୍ଟ । ତେଲଲୁଣର ସଂସାରରେ ପିଆଜ, ଡାଲି ଓ ପେଟ୍ରୋଲର ଦର ବଢ଼ିଲେ ମଧ୍ୟବିତ୍ତଙ୍କୁ ସବୁଠୁ ବେଶୀ ବାଧେ । ଆଉ ସେହିମାନେ ହିଁ ଗରିବଙ୍କ ପାଇଁ

ସବୁଠୁ ବେଶୀ କାନ୍ଦନ୍ତି । କନ୍ଦାକଟା ଛାଡ଼ନ୍ତି । ଏବେ ଦେଶର ଯୁବପୀଢ଼ି ଆଗରେ ଏକ କପାଳବୁଦ୍ଧି ପ୍ରଶ୍ନ - ପାଠ ପଢ଼ି କରିବୁ କଣ ? ନବମ ଫେଲ ଯଦି ପ୍ରଥମଥର ନିର୍ବାଚନ ଲଢ଼ି ଲଢ଼ି ଉପମୁଖ୍ୟମନ୍ତ୍ରୀ ହୋଇପାରୁଛନ୍ତି, ତା ହେଲେ ପରିଶ୍ରମକରି ପଢ଼ାପଢ଼ି କରି ଲାଭ କଣ ? ଦେଶର ଯୁବପୀଢ଼ିଙ୍କୁ ଅକିଞ୍ଚନ ଲେଖକର ବାର୍ତ୍ତା - ଯେଉଁ ବ୍ୟକ୍ତି ଉପମୁଖ୍ୟମନ୍ତ୍ରୀ ହୋଇଛନ୍ତି ତାଙ୍କର ଅସଲ ଯୋଗ୍ୟତା ହେଉଛି, ସେ ମୁଖ୍ୟମନ୍ତ୍ରୀ ଦମ୍ପତ୍ତିଙ୍କ ସନ୍ତାନ । ଘରେ ଘରେ କଳି ଲଗାଇବା ଆମ ଉଦ୍ଦେଶ୍ୟ ନୁହଁ । ଆମ୍ଭଯୋଗୁଁ ଯଦି କାହାଘରେ କଳି ଲାଗେ, ତା ଆଗରୁ ଆମକୁ ମରଣ ହେଇଯାଉ ।

ମଧ୍ୟଖଣ୍ଡୀ, ଶ୍ରୀ ବଳଦେବଜୀଉ
କେନ୍ଦ୍ରାପଡ଼ା, ୭୫୪୨୧୨
ମୋବାଇଲ୍ - ୯୮୫୩୧୧୭୭୨୦
ଇମେଲ୍ - dr.srmishra@gmail.com

# ସାହିତ୍ୟ ସଭା

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ



ଦଶଟା ବାଜିଲାଣି, ଦାସବାବୁ କଲେଜ ବାରଣ୍ଡାରେ ଏପାଖ ସେପାଖ ହେଉଛନ୍ତି । ପଛରେ ଠିଆ ହୋଇଛନ୍ତି ପଣ୍ଡାବାବୁ । ହାତରେ ଚା କପଟିଏ ଧରି କହୁଛନ୍ତି, 'ଆପଣ ଜାଣିନାହାନ୍ତି କି ସାର ? କିଏ କେବେ ଠିକ୍ ସମୟରେ ଆସିଛି କି ? ସବୁ ଆସିଯିବେ । ମୁଖ୍ୟ ଅତିଥି ମଧ୍ୟ ଆସିନାହାନ୍ତି ।' ଦାସବାବୁ ବିଚଳିତ ହୋଇ କହିଲେ, 'ମୁଖ୍ୟ ଅତିଥି ଏବେ ଫୋନ୍ କରିଥିଲେ । କହିଲେ ଆସୁଛନ୍ତି । ଯଦି ସେ ସଭାକୁ ଆସିଗଲେ ଆଉ ଏଠି ମାଛିଟିଏ ବି ଦେଖାଯାଉନାହାନ୍ତି, କଣ ହେବ ଅବସ୍ଥା କହିଲେ ?'

ପଣ୍ଡାବାବୁ ଗମ୍ଭୀର ଭାବରେ କହିଲେ, 'ଦାସ ବାବୁ ମୁଁ ସେଇଥିପାଇଁ ଆପଣଙ୍କୁ ଆଗରୁ କହିଥିଲି, ସମସ୍ତଙ୍କଠାରୁ କିଛି କିଛି ଟଙ୍କା ଆଦାୟ କରନ୍ତୁ । ଦେଖିଥାନ୍ତେ, ଯେଉଁମାନେ ଟଙ୍କା ଦେଇଥାନ୍ତେ ସେମାନେ କେମିତି ଟାଣି ହୋଇ ଆସିଯାଆନ୍ତେ । ଆପଣ ତ ସମାଜ ସେବା କରିବାକୁ ବାହାରିଛନ୍ତି ।'

ଏତିକି ବେଳେ ଖନ୍ଦାପାଖରୁ ଆସି ଗୋସେଇଁ କହିଲେ, 'ଆଜ୍ଞା, କେତେ ଜଣଙ୍କ ପାଇଁ ଭାତଆ ପଡ଼ିବ ? ଠିକ୍ କରି କହିଲେ ଆରମ୍ଭ କରିବା । ଅନ୍ତତଃ ଦୁଇ ଘଣ୍ଟା ଲାଗିବ । ଶୀଘ୍ର କରନ୍ତୁ ।'

ଦାସବାବୁ ପଣ୍ଡାବାବୁଙ୍କୁ ଚାହିଁଲେ, 'କଣ ଲାଗୁଛି ? କେତେ ଜଣ ଆସିବେ ?'

ପଣ୍ଡାବାବୁ ଆଙ୍ଗୁଠିରେ ହିସାବ କରି କହିଲେ, 'ତିରିଶି ଜଣଙ୍କ ପାଇଁ ଚାଉଳ ପକାଅ, ଦେଖିବା । ଯଦି ଅଧିକ ଲୋକ ଆସନ୍ତି ପରେ ସେମାନଙ୍କ ବ୍ୟବସ୍ଥା କଥା ଭାବିବା ।' ଦାସବାବୁ ମୁଣ୍ଡ ହଲାଇ ସମ୍ମତି ଜଣାଇବା ପରେ ଗୋସେଇଁ ଚାଲିଗଲେ । ଏତିକି ବେଳେ କିଛି ଦୂରରୁ ଧୂଳି ଉଡ଼େଇ କିଛି ଗାଡ଼ି

ଆସିବାର ଦେଖାଗଲା । ସେମାନଙ୍କୁ ଦେଖି ଦାସବାବୁଙ୍କ ମୁହଁରେ ସାମାନ୍ୟ ସନ୍ତୋଷ ଦେଖାଗଲା । ସେ ଯା ହେଉ ଘଣ୍ଟାଏ ପରେ ସଭାସ୍ଥଳରେ ଗହଳଚହଳ ବଢ଼ିଲା । ପଣ୍ଡାବାବୁଙ୍କ ଅନୁମାନ ଅନୁଯାୟୀ ପାଖାପାଖି ତିରିଶି ଜଣ ପହଞ୍ଚିଗଲେ । ଦାସବାବୁଙ୍କ ମୁହଁରେ ହସ ଫୁଟିଲା, ସେ ପଣ୍ଡାବାବୁଙ୍କୁ ଚାହିଁ କହିଲେ, ଯା ହେଉ ଖାଇବା ଜିନିଷଗୁଡ଼ାକ ଆଉ ନଷ୍ଟ ହେବନି । ଏତିକି ବେଳେ ପଣ୍ଡାବାବୁ କହିଲେ, ‘ଆଜ୍ଞା, ଆଉ ତିରିଶିଙ୍କ ପାଇଁ ଚାଉଳ ପକାଇବାକୁ କହିଦିଅନ୍ତୁ ।’ ଦାସବାବୁ ଆଶ୍ଚର୍ଯ୍ୟ ହୋଇ ପଣ୍ଡାବାବୁଙ୍କୁ ଚାହିଁଲେ, ‘ଦେଖୁଛନ୍ତି ସଭା ସମୟର ଦୁଇଘଣ୍ଟା ବିଳମ୍ବରେ ମାତ୍ର କୋଡ଼ିଏ ପଚିଶି ଲୋକ ହୋଇଛନ୍ତି, ଆଉ କୋଉଠୁ ଆସିବେ ?’ ପଣ୍ଡାବାବୁ ହସିଦେଇ କହିଲେ, ‘ଆପଣ କହି ଦିଅନ୍ତୁ, କ୍ଷତି ହେଲେ ଭାତଅଁା ହିସାବ ମୋ ଖାତାରେ ପକେଇ ଦେବେ ।’ ଦାସବାବୁ ମନେ ମନେ ଚିନ୍ତା କରିଲେ, ଏଇ ଲୋକ କିଛି ସମୟ ପୂର୍ବରୁ ଯାହା ହିସାବ କରିଥିଲା, ତାହା ସତ ହୋଇଛି, ତେଣୁ ସେ ଆଉ ଦ୍ୱିତୀୟଥର ଚିନ୍ତା ନ କରି ଷାଠିଏ ଲୋକଙ୍କ ପାଇଁ ଖାଇବା ବ୍ୟବସ୍ଥା କରିବାକୁ ନିର୍ଦ୍ଦେଶ ଦେଲେ ।

ସଭାଗୃହରେ ସମସ୍ତେ ବସିଯାଆନ୍ତି, ସଭାକାର୍ଯ୍ୟ ଆରମ୍ଭ କରିବା ବୋଲି ଘୋଷଣା କରିବା ପରେ ସମସ୍ତେ ଧାଡ଼ିବାନ୍ଧି ସ୍କୁଲ ପିଲାଙ୍କ ପରି ଆସି ନିଜ ନିଜ ଆସନ ଅଳଂକୃତ କରି ପକାଇଲେ । ଦାସବାବୁ ତଥାପି ଗୃହ ବାହାରେ ଅପେକ୍ଷା କରିଥାନ୍ତି ବିଶେଷ ଅତିଥିଙ୍କୁ । ପଣ୍ଡାବାବୁ ମାଇକ୍ ଧରି ସମସ୍ତଙ୍କୁ ସମ୍ବୋଧନ କରି ଆସିବା ପାଇଁ ଧନ୍ୟବାଦ ଦେଉଥିଲେ । କହୁ କହୁ କହିଦେଲେ, ଆଜି ଯେଉଁ ଅବସ୍ଥା ହେଲା, ତାହା ଦେଖିବା ପରେ ଦାସବାବୁ ଚିନ୍ତିତ ହୋଇପଡ଼ିଥିଲେ ସେଇଥିପାଇଁ ପ୍ରୀତିଭୋଜନ ପାଇଁ ଯେଉଁ ବ୍ୟବସ୍ଥା କରିବା କଥା ତାହା କେମିତି କରିବା ବୋଲି ଚିନ୍ତାରେ ପଡ଼ିଯାଇଥିଲେ । ଏତେ ବଡ଼ ସଭା ଆଉ ଆମିଷ ଟିକେ ନ ହେଲେ ସୁନ୍ଦର ଲାଗିଥାନ୍ତା କି ? ହେଲେ, ସବୁ ଆସିବା ବିଳମ୍ବ କରିବାପରେ ଦାସବାବୁଙ୍କ ମନ ଆମ୍ବିଳା ହୋଇଗଲା । ପଣ୍ଡାବାବୁଙ୍କ ଏମନ୍ତ ଘୋଷଣା ପରେ କିଛି ଲୋକ ନିଜ ମୋବାଇଲ୍ ଖୋଲି ବ୍ୟସ୍ତ ହୋଇଗଲେ । ଦେଖୁ ଦେଖୁ ଆଉ ଅଧଘଣ୍ଟାରେ ସଭାଗୃହ ପୁରି ଭର୍ତ୍ତି ହୋଇଗଲା । ଦାସବାବୁ ଏ ସବୁ ଦେଖି ଚମକି ପଡୁଥିଲେ । ମାତ୍ର ତିନିଘଣ୍ଟା ବିଳମ୍ବରେ ସଭା ଆରମ୍ଭ ହେଲା । ଏଣୁତେଣୁ ସଭା ନୁହେଁ ଏ । ଆମ ଜାତି ଆମ ସଂହତି ଆମ ସଂସ୍କୃତି ଆମ ସାହିତ୍ୟର ସଭା ବୋଲି ମୁଖ୍ୟ ଅତିଥି ଯେତେବେଳେ କହିଲେ ସେତେବେଳେ ସଭାଗୃହରେ ଜୋରରେ କରତାଳି ଶୁଣାଗଲା ।

ମୁଖ୍ୟ ଅତିଥି ସଭାକୁ ଉଦ୍‌ଘାଟନ କରିଦେବାପରେ କାର୍ଯ୍ୟକ୍ରମ ଚାଲିଲା । ସାହିତ୍ୟର ଅବଦାନ ଉପରେ ଚର୍ଚ୍ଚା କରିବାପାଇଁ ଆସିଥିବା ଜଣେ ମହାନ ଲେଖକ ଦୀର୍ଘ ଚାଳିଶି ମିନିଟର ଏକ ସାରଗର୍ଭକ ଭାଷଣ ଦେଲେ, କେହି ଶୁଣୁଥିଲେ କି ନା ତାହା ଅବଶ୍ୟ ଜଣା ପଡୁନଥିଲା । ସଭାଗୃହରେ କଥାଭାଷାର ଚଳଣି ଆରମ୍ଭ ହୋଇଗଲା । ଅନେକ ଦିନପରେ ସତେ ଯେମିତି ହଜିଯାଇଥିବା ବନ୍ଧୁଙ୍କୁ ପାଇଥିବା ଭଳି ସମ୍ବୋଧନ, ସମ୍ମାନ ଆଉ ଭଲମନ୍ଦ ବୁଝାସୁଝା ହେଉ ହେଉ କେମିତି ଦୁଇଘଣ୍ଟା ବିତିଗଲା କେହି ଜାଣି ପାରିଲେନି । ଅମୁକ ମହାପାତ୍ରଙ୍କ ସଭାରେ କେମିତି ଅବ୍ୟବସ୍ଥା ହୋଇଥିଲା, ଅଣସାହିତ୍ୟିକ ମାନଙ୍କୁ ନେଇ ମୁଖ୍ୟ ଅତିଥି କରିବା ଆବଶ୍ୟକ ନାହିଁ, ଆଜିକାଲି କେହି ସାହିତ୍ୟ ବୁଝୁନାହାନ୍ତି ଏମିତି ଅନେକ ବିଷୟରେ ଚର୍ଚ୍ଚା ପରସ୍ପର ସହିତ ଚାଲିଥିଲା । ମଞ୍ଚ ଉପରେ ବସିଥିବା ଅତିଥି ମାନେ କଣ କହୁଥିଲେ ସେ ବିଷୟରେ କେହି ଶୁଣୁନଥିଲେ । ଅବଶ୍ୟ ଜଣେ ଜଣେ ନିଜ ବକ୍ତବ୍ୟ ଉପସ୍ଥାପନ କରିବାପରେ କେହି କେହି କରତାଳି ମାରିଲେ ସମସ୍ତେ କିଛି କ୍ଷଣପାଇଁ ନିରବ ହୋଇ କରତାଳି ଦେଉଥାନ୍ତି । ସାଢ଼େ ଏଗାରଟା ବେଳେ ଆରମ୍ଭ ହୋଇଥିବା ସଭା ଅନ୍ୟୁନ ଦୁଇଘଣ୍ଟା ଚାଲିବା ପରେ ସାଢ଼େ ଗୋଟାଏ ବେଳେ ନିଜକୁ ସାହିତ୍ୟିକ ବୋଲାଉଥିବା ଜଣେ ଯୁବକବି ନିଜ ଆସନରୁ ଉଠି କହିଲେ, 'ଆଜ୍ଞା, କେତେ ଆଉ ଭାଷଣ ଶୁଣିବା ? ପେଟରେ ଦାନା ପଡ଼ିଲେ ତ ମୁଣ୍ଡକୁ ବୁଦ୍ଧି ଆସିବ ? ଜଲଦି ସଭା ସମାପ୍ତ କରିଲେ ପୁଣି ଆଉ ଓଳିକୁ କବିତାପାଠ କରିବାର ଅଛି ।'

ମଞ୍ଚ ଉପରେ ବସିଥିବା ଅତିଥିମାନେ ମଧ୍ୟ ଯୁବକବିଙ୍କ ସମର୍ଥନ କରିଲେ । ଅନ୍ୟବକ୍ତାମାନେ ତ୍ୱରିତ ବେଗରେ ନିଜ ନିଜ ମନ୍ତବ୍ୟ ରଖିଲେ । ଏହି ସମୟରେ ଆମନ୍ତ୍ରିତ ଅତିଥି ମାନଙ୍କ ମଧ୍ୟରୁ ଜଣେ ମାଇକ ଧରିଲେ । କହିଲେ, 'ମୁଁ ଆପଣଙ୍କ ସହ ସହମତ । ପେଟ ଖାଲିଥିଲେ ବୁଦ୍ଧି ଦିଶେନି । ତେଣୁ ମୁଁ ମୋ ବକ୍ତବ୍ୟ ଯଥା ଶୀଘ୍ର ସମାପନ କରିବାକୁ ଚେଷ୍ଟା କରିବି ।' ଏଇ କଥା ଦୁଇ ତିନିଧାଡ଼ି ସେ ନିଜର ଅଧଘଣ୍ଟିଆ ଭାଷଣ ମଝିରେ ଅନ୍ୟୁନ ସାତ ଆଠଥର କହିଦେଇ ସଭାରେ ଉପସ୍ଥିତ ସମସ୍ତ ସାହିତ୍ୟିକ ବନ୍ଧୁମାନଙ୍କୁ ନିରବ ରହିବାପାଇଁ ବାଧ୍ୟ କରିଦେଲେ । ସଭା ସମାପନ ହେଉ ହେଉ ସାଢ଼େ ଦୁଇଟା ବାଜିଗଲା । ସଭାର ଆୟୋଜକ ଦାସବାବୁ ମାଇକ ଧରି ଘୋଷଣା କରିଦେଲେ, ସମସ୍ତେ ସଭାସ୍ଥଳ ନିକଟରେ ପଡ଼ିଥିବା ତମ୍ବୁପାଖକୁ ଯାଇ ଶୀଘ୍ରାତିଶୀଘ୍ର ମଧ୍ୟାହ୍ନ ଭୋଜନ ସାରିଦେଇ ଆସିଲେ ଆମେ ପରବର୍ତ୍ତୀ କାର୍ଯ୍ୟକ୍ରମ ଆରମ୍ଭ କରିବା । ମାତ୍ର କେଇ କ୍ଷଣ ମଧ୍ୟରେ ସଭାସ୍ଥଳ ଖାଲି ହୋଇଗଲା । ମଞ୍ଚ

ଉପରେ ଚେୟାର ଟେବୁଲ୍ ଘୁଞ୍ଚାଇବା ପାଇଁ କେହି ମିଳିଲେ ନାହିଁ । ଅଗତ୍ୟା ଦାସବାବୁ ସବୁ କାର୍ଯ୍ୟ ନିଜେ ନିଜେ କରିଲେ । ଅପରାହ୍ନର କାର୍ଯ୍ୟକ୍ରମ ପାଇଁ ସବୁ ଯୋଗାଡ଼ କରିଦେଇ ଭୋଜନ କରିବା ସ୍ଥାନକୁ ଆସିଲା ବେଳକୁ ବସିବାପାଇଁ ସ୍ଥାନ ମିଳିନଥିଲା । ସାହିତ୍ୟିକ ମାନେ କଣ କହୁଛନ୍ତି ବୋଲି ଧିରେ ସେ କାନେଇ ଶୁଣିବାକୁ ଚେଷ୍ଟା କରୁଥିଲେ ।

ଯୁବକବିଜଣେ ନିଜ ସଂଗଠିତ ଦଳର ସଦସ୍ୟ ମାନଙ୍କ ସହ ଠିଆହୋଇ ଖାଦ୍ୟ ଖାଉଥିବା ବେଳେ କହୁଥିଲେ, 'ଯାହା କହ ଭାଇ, ଏମିତିକା ଆୟୋଜନ ମୁଁ କେବେ ଦେଖିନି । ଗଲା ରବିବାର ଜାହ୍ନବୀ ସାହିତ୍ୟ ସଂସଦର ସଭାକୁ ଯାଇଥିଲି । ଭାଇ କି ଅବ୍ୟବସ୍ଥା ? ବସିବାକୁ ଚେୟାର ନାହିଁ । ସଭା ଦେଢ଼ ଘଣ୍ଟା ବିଳମ୍ବରେ ଆରମ୍ଭ ହେଲା । ପିଇ ପାଣି ନାହିଁ, ଆଉ ଖାଇବା ? ଛେ... ଆମକୁ କଣ ଅନାଥାଶ୍ରମର ପିଲା ବୋଲି ଭାବିଥିଲେ ନା କଣ ? ଭାତ ଡାଲମା ? ସେ ସବୁ କଣ ମଣିଷ ଖାଆନ୍ତି ? ଆଉ ଆମେ ସ୍ୱନାମଧନ୍ୟ ସାହିତ୍ୟିକ ହେଇ ସେ ସବୁ କେମିତି ଖାଇଥାନ୍ତି ?' ଦାସବାବୁ ଏ ସବୁ ଶୁଣି ନିଜ ଶ୍ରମ ସାର୍ଥକ ହେଲା ବୋଲି ମନେ କରୁଥାନ୍ତି । ସେଇଠି ଆଉ ଅଳ୍ପ ଦୂରରେ ବସିଥିଲେ ଜିଲ୍ଲାର ଜଣେ ପ୍ରମୁଖ ବୟୋଜ୍ୟେଷ୍ଠ ସାହିତ୍ୟିକ । ସେ ନିଜ ଗୋଷ୍ଠିକୁ ଆୟୋଜିତ କରି କହୁଥିଲେ, 'ଏ ସବୁ କଣ ସାହିତ୍ୟ ସଭା ? କହୋ, ଖାଲି ମାଛଭାତ ଖୁଆଇ ଦେଲେ କଣ ସଭା ହୁଏ ? ସଭାରେ ମୁଖ୍ୟ ହେଉଛି, ଅତିଥିଙ୍କ ଅଭିଭାଷଣ । କାହିଁ ? ଅଣସାହିତ୍ୟିକଙ୍କୁ ଆଣି ସଭା କରିଲେ ସେମାନେ କଣ କହିବେ ? ବୁଝିଲ, ଗଲା ମାସରେ ଫୁଲବାଣୀରେ ଗୋଟେ ସାହିତ୍ୟ ସଭାକୁ ଯାଇଥିଲି । ଆମନ୍ତ୍ରଣ କରିଥିଲେ, ସମ୍ବର୍ଦ୍ଧନା ଦେଲେ ଆଉ ସଭାର କବିତା ପାଠୋତ୍ସବକୁ ସଂଯୋଜନା କରିବାକୁ ଅନୁରୋଧ କରିଲେ ମନା କରିପାରିଲିନି । କି ସଭା ସେ ! ଓହୋ, ଷାଠିଏ କବିତା ପଢ଼ା ହେଲା । କି ଉତ୍ସାହ ! ଏଇ ସବୁ ସଭାରେ କିଏ ଆସୁଛନ୍ତି ଦେଖି ଜାଣିପାରିବନି ? କହେ ମାଛ ହେଇଛି ଶୁଣିବା ପରେ ଅଧା ଲୋକ ଆସିଛନ୍ତି ପରା । ଆଉ କଣ କହିବି ।'

ଦାସବାବୁ ମନ ଆମ୍ବିଳା ହୋଇଯାଉଥିଲା । ସେ ଯା'ହେଉ, ସାହିତ୍ୟର ଭବିଷ୍ୟତ ଯୁବପୀଢ଼ି ଉପରେ, ତେଣୁ ସେମାନଙ୍କ ମନ୍ତବ୍ୟକୁ ସମ୍ମାନ ଦେଇ ସେ ଖୁସି ହୋଇଗଲେ । ହାତରେ ଥାଳିଟିଏ ଧରି ସାହିତ୍ୟିକଙ୍କ ଧାଡ଼ିରେ ଠିଆ ହୋଇଗଲେ । ଭାତ, ଡାଲି, ଛଣାଭଜା, ଘାଣ୍ଟ ତରକାରୀ ଆଉ ମାଛ ।

ସୁନ୍ଦର ଉପସ୍ଥାପନା ହୋଇଛି, ବୋଲି ଜଣେ ବନ୍ଧୁ ଜଣେଇ ଦେଲେ । ଆଉ ଜଣେ ବନ୍ଧୁ ଗାଇ ଗାଇ ବାହାରିଗଲେ, ଆସ କିଏ ଖାଇବ ହୋ ଆମ ରଜା ବାବୁର ଖାନା...

ଅପରାହ୍ନ ତିନିଟା ବେଳକୁ ଦ୍ୱିତୀୟ ଅଧିବେସନ ବସିଲା । ମୁଖ୍ୟତଃ କବିତା ପାଠ ହେବ । ଯେଉଁ କବିବନ୍ଧୁମାନେ କବିତା ପାଠ କରିବାକୁ ଚାହାନ୍ତି ସେମାନେ ନିଜ ନିଜ ସ୍ୱରଚିତ କବିତା ସଂଯୋଜକଙ୍କୁ ଦେଇଦେବେ ବୋଲି ଘୋଷଣା କରାଗଲା । ମଞ୍ଚାଉପରେ ଦାସବାବୁଙ୍କ ପାଖରେ ବସିଥିଲେ ଜଣେ ପୋଖତ ସାହିତ୍ୟିକ ଶ୍ରୀ ପାତ୍ର । ଅନେକ ପତ୍ରପତ୍ରିକାରେ ତାଙ୍କ ରଚିତ କବିତା ସ୍ଥାନ ପାଇଛି । ତାଙ୍କ ପାଖରେ ବସିଥିଲେ ସୁଶ୍ରୀ ମଧୁସ୍ମିତାଦେବୀ । ସେ ଜଣେ ଯୁବକବୟିତ୍ରୀ । ନୂଆ ନୂଆ ଲେଖାଲେଖି କରୁଛନ୍ତି, ହେଲେ ସାହିତ୍ୟ ସଭା ସଂଯୋଜନା କରିବାରେ ସେ ସିଦ୍ଧହସ୍ତା । ତାଙ୍କ ପାଖରେ ବସିଥିଲେ ଶ୍ରୀ ଘଡ଼େଇ । ସାହିତ୍ୟ ଏକାଡ଼େମୀରୁ ପୁରସ୍କାର ପାଇବାକୁ ନିଜକୁ ହକଦାର୍ ବୋଲି ସେ ସବୁବେଳେ କହିବୁଲନ୍ତି । ସାହିତ୍ୟ ସଭାକୁ ସେ କେବଳ ଗୋଟିଏ ସର୍ତ୍ତରେ ଯାଆନ୍ତି, ଯେ ତାଙ୍କୁ ମଞ୍ଚ ଉପରେ ବସିବାକୁ ଦିଆଯିବ । ପଣ୍ଡାବାବୁ ସଭାସ୍ଥଳରେ ପହଞ୍ଚିବାବେଳକୁ ମଞ୍ଚ ଉପରେ ଆଉ ବସିବାକୁ ସ୍ଥାନ ନାହିଁ । ତାଙ୍କୁ ଅସହାୟ ଅବସ୍ଥାରେ ଦେଖିବା ପରେ ଦାସବାବୁ ନିଜ ଚେୟାର ଛାଡ଼ିଦେଇ ସଭାରେ ଯାଇ ବସିପଡ଼ିଲେ ।

କବିତା ପାଠର ସଂଯୋଜକ ଶ୍ରୀ ପାତ୍ର, ସ୍ୱାଗତ ଅଭିଭାଷଣ ଦେବାକୁ ଆରମ୍ଭ କରିଲେ । ଅନେକ କବିବନ୍ଧୁ ଆହୁରି ଆସିନାହାନ୍ତି, ସେମାନେ ଆସିଲେ କବିତା ପାଠ ହେବ । ଶ୍ରୀ ପାତ୍ର ଏଇ ମଉକାର ସମ୍ପୂର୍ଣ୍ଣ ସୁଉପଯୋଗ କରି ନିଜ ବକ୍ତବ୍ୟକୁ ଯଥା ସମ୍ଭବ ଲମ୍ବା କରି ଚାଲିଲେ । ସାହିତ୍ୟ ବିଷୟରେ କଣ କହିଲେ ତାହା ଜଣାନାହିଁ, କିନ୍ତୁ ତାଙ୍କ ମନ୍ତବ୍ୟରୁ ସେ କେମିତି ସାହିତ୍ୟ ଏକାଡ଼େମୀ ଦ୍ୱାରା ଅବହେଳିତ ହୋଇଛନ୍ତି ତାହା ସମସ୍ତଙ୍କୁ ଜଣାଇବାରେ ଲାଗିଲେ । ଏହି ସମୟରେ ମଞ୍ଚାସୀନ ଶ୍ରୀ ଘଡେଇ ଶ୍ରୀ ପାତ୍ରଙ୍କୁ ସମର୍ଥନ ଜଣାଇ କହିଲେ, ସେ ମଧ୍ୟ ଅବହେଳାର ଶୀକାର ହୋଇଛନ୍ତି । ସେଇଠୁ ଆରମ୍ଭ ହେଲା ସାହିତ୍ୟ ଏକାଡ଼େମୀରେ ହେଉଥିବା ଅନିୟମିତତା ବିଷୟରେ ଚର୍ଚ୍ଚା । ଏହି ସମୟରେ ସଭାରେ ବସିଥିବା ଜନୈକ ଯୁବକବି ନିଜ ସ୍ଥାନରେ ଠିଆହୋଇ କହିଲେ, 'ସାର୍, ଆମେ ଭଲ ଭାବରେ ଜାଣିଛୁ ସେଇଠି କଣ ହଉଛି । ଆମକୁ ସେ ବିଷୟରେ କହିବା ଛାଡ଼ନ୍ତୁ, କବିତା ପାଠ ଆରମ୍ଭ କରନ୍ତୁ । ଆମେ

ଆଜ୍ଞା ଦୂରରୁ ଆସିଛୁ, ଶୀଘ୍ର କବିତା ପଢ଼ିଲେ ଘରକୁ ଫେରିବୁ ।' ଯୁବକବିଙ୍କ କଥା ଶ୍ରୀ ପାତ୍ରଙ୍କୁ ଅସମ୍ମାନଜନକ ଲାଗିଲା, ହେଲେ ନିଜ କ୍ରୋଧ ସମ୍ବରଣ କରି ସେ ନିଜ ବକ୍ତବ୍ୟକୁ ତୁରନ୍ତ ସମାପନ କରିଦେଇ ନିଜ ଚେୟାରକୁ ଫେରି ଆସିଲେ ।

ଏହି ସମୟରେ ଶ୍ରୀ ଘଡ଼େଇ ଉଠିଯାଇ ମାଇକ୍ ଧରି କିଛି କହିବାକୁ ଆରମ୍ଭ କରୁଥିଲେ, ଦୁର୍ଭାଗ୍ୟବଶତଃ ସେଇ ସମୟରେ ବିଦ୍ୟୁତ ବ୍ୟାଘାତ ହୋଇଗଲା । ଶ୍ରୀ ଘଡ଼େଇ ନିଜ ସ୍ୱରକୁ ଉଚ୍ଚ କରି କହିଲେ, 'ଏମିତି ହିଁ ହେଉଛି ଆମ ସାହିତ୍ୟିକଙ୍କ ଭାଗ୍ୟ । ଠିକ୍ ସମୟରେ ଦୈବୀଦୁର୍ବିପାକ ପରି ଆମକୁ ପଛକୁ ଠେଲି ଦିଆଯାଉଛି । ଅଣସାହିତ୍ୟିକମାନେ ସବୁ ସମ୍ମାନ ମାରି ନେଉଛନ୍ତି ।' ଯୁବକବି ଜଣକ ପୁଣି ନିଜ ସ୍ଥାନରେ ଠିଆ ହୋଇ କହିଲେ, 'ଆଜ୍ଞା ଘଣ୍ଟାଏ ହେଲାଣି ଏ ସବୁ ଶୁଣିଲୁଣି, ଏବେ କବିତା ଶୁଣିବା ନା ଘରକୁ ଯିବା ?' ସେ ନିଜ ସ୍ଥାନରେ ବସିଯାଉ ଯାଉ କହିଲେ, 'ଶଃ.. କବିତା ଲେଖିବା ଜଣାନାହିଁ, ଖାଲି ଭାଷଣ ଦେଲେ ଯିଏଙ୍କୁ କିଏ ସମ୍ମାନ ଦେଇ ପକେଇବ ହେ ?' ତାଙ୍କ କଥା ଶୁଣି ସଭାରେ କିଛି ସମୟ ହାସ୍ୟରୋଳ ଖେଳିଲା । ଅବଶ୍ୟ ଏଇ କଥା ମଞ୍ଚ ଉପର ଯାଏଁ ପହଞ୍ଚିଲାନି । କିନ୍ତୁ ଯୁବକବିଙ୍କ ଦୟାରୁ ସଭାକୁ ବନ୍ଦକରି କବିତା ପାଠୋତ୍ସବ ଆରମ୍ଭ କରାଗଲା ।

ହାତଘଣ୍ଟାକୁ ନିରେଖି ଦେଖି ଶ୍ରୀ ପଣ୍ଡା ଘୋଷଣା କରିଲେ ଯେ, ଆମ ପାଖରେ ପଚିଶିଗୋଟି କବିତା ପହଞ୍ଚିଛି । ଜଣେ ଜଣେ ଦୁଇ ଦୁଇ ମିନଟ୍ କହିଲେ ମଧ୍ୟ ଏକ ଘଣ୍ଟା କେବଳ କବିତା ଆବୃତ୍ତିରେ ଲାଗିଯିବ । ଆଉ ସଂଯୋଜନା ମିଶେଇ ଦୁଇଘଣ୍ଟା ହୋଇଯିବ । ତେଣୁ ଅନୁରୋଧ କବିମାନେ ନିଜ କବିତାକୁ ଯଥାଶୀଘ୍ର ପଠନ କରି ଅନ୍ୟ ବନ୍ଧୁମାନଙ୍କୁ ସମୟ ଦେବେ । କେବଳ ଗୋଟିଏ ପୃଷ୍ଠାର କବିତା ପଢ଼ିବେ । ଯଦି ଲମ୍ବା କବିତା ଥାଏ ତେବେ ତାହାର ମାତ୍ର ଦୁଇ କିମ୍ବା ତିନୋଟି ପାରା ପଢ଼ିବେ । କବିତାକୁ ଗୀତ ଆକାରରେ ଆବୃତ୍ତି କରିବାଦ୍ୱାରା ସମୟ ଅପଚୟ ହେବ, ତେଣୁ ଆବୃତ୍ତି କରିବେ ନାହିଁ । ସମୟର ଘୋର ଅଭାବ ତେଣୁ ଆମେ ଯେତେ ଶୀଘ୍ର ପାରିବା କାର୍ଯ୍ୟକ୍ରମକୁ ସାରିବା । ଏହାପରେ ସଂଯୋଜନା କରିବାପାଇଁ ସୁଶ୍ରୀ ମଧୁସ୍ମିତା ଜଣେ ଜଣେ କରି କବିମାନଙ୍କୁ ନିମନ୍ତ୍ରଣ କରୁଥାନ୍ତି । ଅନେକ ଅନୁରୋଧ ସତ୍ତ୍ୱେ କିଛି ବନ୍ଧୁ କବିତାକୁ ଗାଇ ଶୁଣେଇଲେ । ଏହାଦ୍ୱାରା ସମୟ ନଷ୍ଟ ହେଉଥିବା ଜାଣି ଅନେକ କବିବନ୍ଧୁ ନିଜର କ୍ରୋଧ ପରିପ୍ରକାଶ କରିବାକୁ

ଲାଗିଲେ ।

ସଭାର ପଛରେ ବସିଥିବା କିଛି କବି ଅନ୍ୟ କବିମାନଙ୍କ ଲେଖାର ସମାଲୋଚନା କରିବାର ଦେଖାଯାଉଥିଲା । ଭାଷାର ସଂଯମତା କେହି ରଖୁଥିବା ଦେଖାଯାଉନଥିଲା, ସେ ଯାହେଉ ସେମାନେ ମଞ୍ଚ ଆଉ ଅନ୍ୟ ସଦସ୍ୟମାନଙ୍କଠାରୁ ଯଥେଷ୍ଟ ଦୂରତ୍ୱ ବଜାୟ ରଖି ନିଜର ସୁଚିନ୍ତିତ ମନ୍ତବ୍ୟ ପରସ୍ପରକୁ ଶୁଣାଇ ଆନନ୍ଦିତ ହେଉଥିଲେ । ଏହି ସମୟରେ କବିତା ପାଠ କରିବାକୁ ଉତ୍ସୁକ ଜଣେ କବିବନ୍ଧୁ ପଛକୁ ଦଉଡ଼ି ଆସି କହିଲେ, 'ହେ ଭାଇ ମୋ ମୋବାଇଲଟା ଟିକେ ରଖ, ମୁଁ କବିତା ପଢ଼ିଲା ବେଳେ ମୋର ଦୁଇ ତିନିଟା ଫୋଟୋ ଉଠେଇ ଦେବ ।' ସେ ଚାଲିଗଲେ । ଏହାପରେ ଜଣେ ପରେ ଜଣେ ସବୁ ପଛକୁ ଆସିଲେ । ନିଜ ନିଜ ମୋବାଇଲ୍ ଦେଇ ଫୋଟୋ ଉଠେଇବା ଅନୁରୋଧ କରି ଚାଲିଲେ । କବିତା ପଢୁଥିବା ସମୟରେ ଯେମିତି ନିଜର ଭଲ ଫୋଟୋ ଉଠିବ ସେଇ ପ୍ରୟାସରେ ସମସ୍ତେ ଯଥାସମ୍ଭବ ଧିରେ ଧିରେ କବିତା ପଢ଼ିବା ସହ ହସ ହସ ମୁହଁ ଦେଖାଇବାକୁ ଭୁଲିଲେ ନାହିଁ । କବିତା ପାଠ ଓ ସଂଯୋଜନା ଚାଲିଥିବା ବେଳେ, ପାଖାପାଖି ଦଶଟି କବିତା ପାଠ ହୋଇସାରିଥିଲା, ସେଇ ସମୟରେ କେହି ଜଣେ କହିଲା, 'ଆଜି ଆଉ ସବୁ କବିତା ପଢ଼ିହେବନି । ଏବେ ତ ହେଇ ପାଞ୍ଚଟା ବାଜିଲାଣି । ଆଉ କବିତା ପଢ଼ିବ କେତେବେଳେ ? ପୁଣି ଗାଁକୁ ଯିବାକୁ ଗାଡ଼ି ମିଳିବକି ନାହିଁ ?'

ଏଇ କଥାଟା ସମ୍ଭବତଃ କେହିଜଣେ ଉଚ୍ଚସ୍ୱରରେ ଜଣାଇବା ପରେ ସଭାରେ ବସିଥିବା ଅନ୍ୟକବିମାନେ ଗୋଟିଏ ଗୋଟିଏ ଚ୍ଛୋଟ ଚ୍ଛୋଟ ଚିଠାରେ ନିଜ ନାଁ ଲେଖି ସଂଯୋଜକାଙ୍କୁ ଦେଲେ । ସବୁ ଲେଖିଥିଲେ ମୁଁ ଦୂରରୁ ଆସିଛି ମୋତେ ଶୀଘ୍ର ଫେରିବାକୁ ହେବ । ସଂଯୋଜକା ପୁଣି ମାଇକ ଧରି ଘୋଷଣା କରିଲେ, ଶୀଘ୍ର ଶୀଘ୍ର ସଭା ସାରିବାକୁ ପଡ଼ିବ । ତେଣୁ କବିତାକୁ ଅଧାପୃଷ୍ଠା ହିଁ ପଢ଼ିବେ । ଏହି ସମୟରେ ସଭାସ୍ଥଳକୁ ବନ୍ଦ କରିବାକୁ ଅଧିକାରୀ ଆସି ପହଞ୍ଚିଗଲେ । ସଭାସ୍ଥଳକୁ ଭଡ଼ା ସୂତ୍ରରେ ଅଣାଯାଇଥିଲା । ସେମାନେ ସୂଚେଇ ଦେଲେ ଯେ ଠିକ୍ ପାଞ୍ଚଟାରେ ବିଦ୍ୟୁତ୍ କାଟ ହେବ, ଯାହା କରିବେ ଶୀଘ୍ର କରନ୍ତୁ । ଏହା ଶୁଣିବା ପରେ ସଭାରେ ବସିଥିବା ଶ୍ରୀ ପଣ୍ଡା ମାଇକ ଧରି ଘୋଷଣା କରିଲେ ଯେ ଆଜିର କାର୍ଯ୍ୟକ୍ରମକୁ ଏଇଠି ସମାପନ କରିବା ଉଚିତ ହେବ । ସେ ଧନ୍ୟବାଦ ଅର୍ପଣ କରିବାକୁ ଉଦ୍ୟମ କରୁଥିବା ବେଳେ ସଭାରେ ବସିଥିବା କିଛି କବି ଏହାର ବିରୋଧ କରି କହିଲେ

ଆମେ ଏତେ ଦୂରରୁ ଆସିଛୁ ଯେତେବେଳେ କବିତା ନ ପଢ଼ି ଫେରିବୁ ନାହିଁ । ତେଣୁ ସେମାନେ ସବୁ ଏକାଠି ମଞ୍ଚ ଉପରେ ଚାଲିଆସି, ମାଇକକୁ ଧରି କବିତା ପାଠ କରିବାର ପ୍ରୟାସ କରୁଥିଲେ । ମଞ୍ଚ ଉପରେ ଏକ ରକମ ଠେଲାପେଲା ଆରମ୍ଭ ହୋଇଗଲା । ମଞ୍ଚାସୀନ ଅତିଥିମାନେ ତଳକୁ ଚାଲିଆସୁଥିଲେ ।

କିଛି କବି ନିଜ କବିତା ପାଠ କରୁଥିବାର ଫୋଟୋ ନେଉଥିଲେ, ଆଉ ସଭାର ଆୟୋଜକ ଦାସବାବୁ ଓ ପଣ୍ଡାବାବୁ ସେଠାରୁ ନିରାପଦ ଦୂରତାକୁ ଫେରି ଆସି ଘରକୁ ଯିବା ବ୍ୟବସ୍ଥା କରୁଥିଲେ । ଦାସବାବୁ ନିରବରେ କହୁଥିଲେ, ‘ନ ଗଙ୍ଗୋଦତ୍ତ ପୁନରେପି..., ଯା ଶଃ... ଆଉ ସାହିତ୍ୟ ସଭା ଆୟୋଜନ କରିବି ନାହିଁ ।’ ପଣ୍ଡାବାବୁ ହସିଦେଇ କହିଲେ, ‘ଆଜ୍ଞା ଏକା ଆପଣ ନୁହନ୍ତି ସମସ୍ତେ ସେଇୟା କହନ୍ତି, କିନ୍ତୁ କଣ କରିବା, ସାହିତ୍ୟର ଆକର୍ଷଣ ଏତେ ଯେ ପୁଣି ସଭା ଆୟୋଜନ କରିବାକୁ ଆଗେଇ ଆସନ୍ତି ।’ ଏତିକି ବେଳେ ପଛରୁ ଆସି ସୁଶ୍ରୀ ମଧୁସ୍ମିତା କହିଲେ, ‘ସାର୍, ଆଜିର ସଭା ସମ୍ପୂର୍ଣ୍ଣ ସଫଳ ହେଇଛି । ଆପଣ ବହୁତ ଭଲ ଆୟୋଜନ କରିଥିଲେ । ଅବଶ୍ୟ ଟିକେ ସମୟରେ ହୋଇଥିଲେ, ଭଲ ହୋଇଥାନ୍ତା ।’ ଦାସ ବାବୁ ନିଜକୁ ପୁଣିଥରେ ଧନ୍ୟମନେ କରି କହୁଥିଲେ, ‘ଆପଣ ମାନେ ଏମିତି ସାହାଯ୍ୟ କଲେ ପୁଣି ଥରେ ଭଲ କରି ଆୟୋଜନ କରିବା ।’ ପଣ୍ଡାବାବୁ ନିଜ ମୁଣ୍ଡରେ ହାତ ଦେଇ ସେଠାରୁ ଚାଲିଯାଉଥିଲେ ।

# କିଛି କଥା

ଜଣେ ବନ୍ଧୁ ନୂଆ ଫ୍ରିଜଟିଏ କିଣି ଆଣିବାପରେ ପୁରୁଣା ଫ୍ରିଜକୁ କଣ କରିବ ବୋଲି ଚିନ୍ତା କରି ନିଜ ଘର ବାହାରେ ରଖିଦେଇ ସେଥିରେ ଲେଖିଦେଲା, 'ସମ୍ପୂର୍ଣ୍ଣ ମାଗଣା' । ତିନିଦିନ ପର୍ଯ୍ୟନ୍ତ ସେଇଠି ସେଇମିତି ପଡ଼ିରହିଲା କିନ୍ତୁ କେହି ଦେଖିଲେ ନାହିଁ । ଚିନ୍ତାରେ ପଡ଼ିଥିବା ବନ୍ଧୁ ଭାବିଲେ ଆଜିକାଲି ହୁଏତ କେହି ଅବିଶ୍ୱାସ କରୁଥିବ ତେଣୁ ପୁଣି ସେଥିରେ ଲେଖିଥିବା କଥାକୁ ବଦଳାଇଦେଇ ଲେଖିଲେ, 'ଶସ୍ତାରେ ନେଇଯାଆନ୍ତୁ, ମାତ୍ର ୫ ଶହ ଟଙ୍କା' । ସେଇ ରାତିରେ ଫ୍ରିଜକୁ କେହି ଚୋରୀ କରିନେଇ ଗଲା ।

X X X X X

# ଏମିତି ବି ଅଦ୍ଭୁତ ପ୍ରାଣୀ ଥାଆନ୍ତି !

କିଛି ବନ୍ଧୁ ସମୁଦ୍ରକୂଳରେ ବୁଲୁଥିବା ସମୟରେ କେହିଜଣେ କହିଲା, ହେଇ ଦେଖ ମଲା ପକ୍ଷୀଟିଏ । ଜଣେ ବନ୍ଧୁ ଆକାଶକୁ ଚାହିଁ ଖୋଜ ଖୋଜ ପଚାରୁଥିଲେ 'କେଉଁଠି ?'

# ସମୀକ୍ଷା - ଜୀବନଯାତ୍ରା କବତା ସଂଗ୍ରହ

ସାମ୍ପ୍ରତକ ଆଧୁନକ କବତାର ଉଦୀୟମାନ ଯୁବଲେଖକ ତଥା କବ ଶ୍ରୀ ଅଜତ କୁମାର ସାବତଙ୍କ ପ୍ରଥମ କବତା ସଂକଳନ, ଜୀବନଯାତ୍ରା, ଜୀବନର ଅନେକ ନଛକ ସତ୍ୟ ଓ ଭବପ୍ରବଣତାକୁ ନେଇ ସୁନ୍ଦର ଓ ସାବଲୀଳ ଭଷାରେ ଉପସ୍ଥାପିତ ଏକ ମୂଲ୍ୟବାନ କବତା ସଂଗ୍ରହ । ବାପା, ମା, ଜୀବନଯାତ୍ରା, ଦୁନଆ, ଧର୍ମ, ସ୍ୱପ୍ନ, ନୟତୀ, ପ୍ରକୃତ ଆଦ ବଭନ୍ନ ବଷୟକୁ ନେଇ ପଚ୍ଚଶଟି କବତାଦ୍ୱାର ଏହ ସଂକଳନ ସମୃଦ୍ଧ । ସମ୍ପୂର୍ଣ୍ଣ ବୋଧଗମ୍ୟ ଭଷାରେ କବ ପ୍ରତଟି କବତାକୁ ପାଠକର ମନକୁ ପାଇଲ ଭଳ ଉପସ୍ଥାପନ କରଛନ୍ତ ଏହ ପୁସ୍ତକରେ । କବତା ସଂକଳନର ପ୍ରଥମ କବତା 'ବାପା'ରେ କବ ନଜ ପିତାଙ୍କ ଉଦ୍ଦେଶ୍ୟରେ ଲେଖିଥିବା କେଇଧାଡ଼ିର କବତା 'ଆଜ ଯିଏ / ଜୀବନର / ଛୋଟ ବଡ଼ / ଶିଖ ପ୍ରଶିଖରେ / ବୋହୁଛନ୍ତ /.... ସେ ଆଉ / କେହ ନୁହନ୍ତ / ସେ / ମୋର ଆତ୍ମା / ମୋତେ ଗଢ଼ି ତୋଳଥିବା / ମୋର ପିତା / ମୋର ଭଗ୍ୟ ବଧାତା' କବଙ୍କ ଏକ ଅନନ୍ୟ କୃତ । ପିତାଙ୍କ ଉଦ୍ଦେଶ୍ୟର କବ ବ୍ୟବହାର କରଥିବା ଶବ୍ଦାବଳୀ ଜଣେ ପାଠକର ମନକୁ ନଶ୍ଚୟ ଭବରେ ଆନ୍ଦୋଳତ କରବ । ସେହପର ମାତ୍ର ଦୁଇଟି ପାରଗ୍ରାଫରେ କବଙ୍କ ଦ୍ୱତୀୟ ଉପସ୍ଥାପନ 'ମା' ବହୁତ ଉଚ୍ଚକୋଟୀର ହୋଇଛ ।



କବତା 'ଜୀବନ ଯାତ୍ରା' ଯାହାକୁ କବ ମାତ୍ର କେଇ ପଦରେ ଉପସ୍ଥାପନ କରଛନ୍ତ, 'ମାଟିରୁ, / ମାଟି / ଉପରକୁ / ପୁଣି / ମାଟିକୁ, / ବୋଧେ / ଏହା ହିଁ / ଆମର / ଜୀବନ ଯାତ୍ରା ।' ଏଇ କେଇ ପଦରେ ଯେ ଜଣେ ଜୀବନକୁ ସମ୍ପୂର୍ଣ୍ଣ ଉପଲବ୍ଧି କରଥିବ ତାହା ସହଜରେ



ଅନୁମେୟ । ଯୁବବୟସରେ ଅତ୍ୟନ୍ତ ଗମ୍ଭୀର ଦର୍ଶନକୁ ନେଇ ସେ ଉପସ୍ଥାପନ କରିଛନ୍ତି ଏହି ସଂଗ୍ରହ । ପୁସ୍ତିକାର ପ୍ରତ୍ୟେକ କବିତା ପଠନଯୋଗ୍ୟ ଏବଂ ପାଠକଙ୍କ ଦ୍ୱାରା ନିଶ୍ଚୟ ଭାବରେ ଆଦୃତ ହେବ ଏଥିରେ ଦ୍ୱିମତ ନାହିଁ ।

ପାଖାପାଖି ଶହେ ପୃଷ୍ଠାର ଏହି ପୁସ୍ତକର ପ୍ରଚ୍ଛଦରେ କବି ଏକ ପ୍ରତୀକାତ୍ମକ ଛବିରେ ମନୁଷ୍ୟ ଜୀବନର ପ୍ରତ୍ୟେକ ସୋପାନକୁ ଦର୍ଶାଇଛନ୍ତି । ଏବଂ ପୁସ୍ତକର ବନ୍ଧେଇ ଭିତର ପାର୍ଶ୍ୱରେ କବି ଅନେକ ଛୋଟ ଛୋଟ କବିତାକୁ ସଜେଇ ଦେଇଛନ୍ତି । ସର୍ବୋପରି ଏହି ପୁସ୍ତକଟି ପାଠକଙ୍କୁ କବିତାର ଏକ ଅନନ୍ୟ ଅନୁଭୂତି ଯୋଗାଇଦେବ । ନିଜର ପ୍ରଥମ କବିତା ସଂକଳନକୁ କବି ନିଜ ପିତା ସ୍ୱର୍ଗତ ଶ୍ରୀ ପଞ୍ଚାନନ ସାବତଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ କରିଛନ୍ତି । ଏଥିରୁ ସହଜରେ ଅନୁମେୟ ହେଉଛି ଯେ କବି ଶ୍ରୀ ସାବତଙ୍କ ଜୀବନରେ ନିଜ ପିତାଙ୍କ ବହୁତ ପ୍ରଭାବ ରହିଛି ।

କବିତା ସଂକଳନ 'ଜୀବନ ଯାତ୍ରା'କୁ ପ୍ରକାଶିତ କରିଛନ୍ତି ବ୍ରହ୍ମପୁର, ଗୋସାଇଁ ନୁଆଗାଁ, ପାଣିଗ୍ରାହୀ ସାହିର ଅନ୍ନପୂର୍ଣ୍ଣା ପବ୍ଲିଶର୍ସ । ଏକ ଶହ ଟଙ୍କା ବିନିମୟରେ ଆପଣ ଏହି ପୁସ୍ତକଟିକୁ ପାଇପାରିବେ । କବିତା ସଂକଳନରେ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ସବୁ ସମୟର ପରିସ୍ଥିତି ଓ ମନୋଭାବକୁ ନେଇ ଲେଖାଯାଇଥିବା କବିତା ଗୁଡ଼ିକ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଛି । କବି ଶ୍ରୀ ସାବତ ଜଣେ ତରୁଣ ତଥା ଯୁବ ଲେଖକ ହୋଇଥିବା ସତ୍ତ୍ୱେ ତାଙ୍କର ଲେଖନୀର ଭାଷା ଓ ଅନୁଭବର ଗଭୀରତା ଓ ଜୀବନର ଦୁଃଖସୁଖ ସହ ତାଙ୍କର ଅନ୍ତରଙ୍ଗତା ଏଇ କବିତା ସଂକଳନ ମାଧ୍ୟମରେ ସହଜରେ ବାରି ହୁଏ, ଯାହା ନିଶ୍ଚୟ ଭାବରେ ଜଣେ ପାଠକକୁ ଏକ ଅନନ୍ୟ ଅନୁଭବ ଦେବାରେ ସକ୍ଷମ ହେବ ବୋଲି ଆମ ଆଶା ।

'ଜୀବନ ଯାତ୍ରା' ସାହିତ୍ୟ ଜଗତର ଏକ ସଫଳ ସୃଷ୍ଟି । କବିଙ୍କ କାବ୍ୟଧାରା ଏହି ଭାବରେ ଚଳଚଞ୍ଚଳ ଥାଉ ଏବଂ କବିଙ୍କ କାବ୍ୟ ଭଣ୍ଡାର ଆହୁରି ସଶକ୍ତ ଓ ସୁଦୃଢ଼ ହେଉ । ଆମେ କବି ଶ୍ରୀ ସାବତଙ୍କ ସଫଳତା କାମନା କରୁଛୁ ।

# ଜିକା ଭୂତାଣୁ ଆତଙ୍କ

ସଂପ୍ରତ ବଶ୍ୱର ଏକ ବୃହତ ଅଞ୍ଚଳ ଉପରେ ଏକ ଭୂତାଣୁ ଜନତ ରୋଗର ଆଶଙ୍କା ଘନୀଭୂତ ହେବାରେ ଲାଗିଛ । ଉତ୍ତର ଆମେରକା ଏବଂ ତତ୍‌ସଂଲଗ୍ନ ଅଞ୍ଚଳମାନଙ୍କରେ ଜକା ଭାଇରସ ନାମକ ଭୂତାଣୁ ଜନତ ସଂକ୍ରମଣ ଦେଖିବାକୁ ମିଳଛ, ଯାହା ଅନେକଙ୍କ ପାଇଁ ଚନ୍ତାର ବଷୟ ହୋଇଛ । ସୂଚନାଯୋଗ୍ୟ ଯେ ଏହ ଭୂତାଣୁଜନତ ସଂକ୍ରମଣ ପାଇଁ କୌଣସି ପ୍ରତଷେଧକ ଔଷଧ ବା ଟିକାର ବ୍ୟବସ୍ଥା ନାହିଁ, ଏବଂ ଚକତ୍ସାପରେ ମଧ ଏହାକୁ ପ୍ରତରୋଧ କରବା ଭଳ କ୍ଷମତା ଦେଖାଯାଉନାହିଁ । ମଶା କାମୁଡ଼ିବା ଯୋଗୁଁ ବ୍ୟାପୁଥିବା ହେତୁ ଏହା ସହଜରେ ଅନ୍ୟକୁ ସଂକ୍ରମିତ କରବାର କ୍ଷମତା ରଖୁଛ ଏବଂ ଏହାଦ୍ୱାରା କୌଣସି ସ୍ୱତନ୍ତ୍ର ଲକ୍ଷଣ



ଦେଖାଯାଉନଥିବା ହେତୁ ଏହାଦ୍ୱାରା ହେଉଥିବା ସଂକ୍ରମଣ ବଷୟରେ ସହଜରେ ଜାଣି ହେଉନାହିଁ । ସାଧାରଣ ଥଣ୍ଡାଜ୍ୱର ପର ଜ୍ୱର, ଦେହରେ ଫୋଟକା ପଡ଼ିବା, ଆଣ୍ଠୁଗଣ୍ଠି ବ୍ୟଥା ଏବଂ ଆଖି ଧରବା ଭଳ ଲକ୍ଷଣମାନ ଦେଖାଯାଏ । ଏହ ରୋଗ ସାଧାରଣତଃ ସାମାନ୍ୟରୁ ଅତ ସାମାନ୍ୟ ରହୁଥିବା ବେଳେ ଏହା କଛ ଦନରୁ ଆରମ୍ଭ କର କଛ ସପ୍ତାହ ପର୍ଯ୍ୟନ୍ତ ହୋଇପାରେ । କନ୍ତୁ ଏହ ରୋଗ ହେତୁ ହାସପାତାଳରେ ଭର୍ତ୍ତି ହେବାପର ଅବସ୍ଥା ଆସେ ନାହିଁ ।

ଏହ ରୋଗର ପ୍ରଥମ ଉପସ୍ଥିତ ବ୍ରାଜିଲଠାରେ ଦେଖାଯାଇଥିବା କଥା ମଇ ୨୦୧୫ରେ ପାନ୍ ଆମେରକାନ୍ ହେଲ୍‌ଥ୍ ଅର୍ଗାନାଇଜେସନ୍ (PAHO) ଦ୍ୱାରା ଜଣାଇ ଦଆଯାଇଥିଲା । ଏହା ଏକ ମହାମାରୀର ରୂପ ନେଇ ସମଗ୍ର କେନ୍ଦ୍ର ଏବଂ ଦକ୍ଷିଣ ଆମେରୀକୀୟ ଅଞ୍ଚଳରେ ବ୍ୟାପ୍ତ ହୋଇଥିଲା । ଏହା ଫଳରେ ବୟସ୍କ ବ୍ୟକ୍ତିମାନଙ୍କ ମଧରେ ଗୁଲଆନ୍ ବେର ସିଣ୍ଡ୍ରୋମ୍ ଏବଂ ଗର୍ଭସ୍ଥ ଶିଶୁମାନଙ୍କ ମସ୍ତିଷ୍କର ଅଭିବୃଦ୍ଧି କମ ହେଉଥିବାର ଲକ୍ଷ୍ୟ କରାଯାଉଛ । ଏଥିପାଇଁ ବଶ୍ୱର ଅନେକ ଦେଶକୁ ଯିବା ଆସିବା ଉପରେ କଟକଣା ଜାରୀ କରାଯାଇଛ ।

ଜକା ଭୂତାଣୁ, ଫ୍ଲାଭିଭିରଡ଼ି ଫ୍ୟାମିଲି ଏବଂ ଫ୍ଲାଭିଭିରଡ଼ି ଜେନସ୍ ଅନ୍ତର୍ଭୂକ୍ତ ଭୂତାଣୁ ଅଟେ । ମନୁଷ୍ୟମାନଙ୍କରେ ଏହା ପ୍ରାଥମିକ ଭାବରେ ଏକ ସାଧାରଣ ଜ୍ୱର ପର ରୋଗ ସୃଷ୍ଟି କରଥାଏ ଯାହାକୁ ଜକା ଜ୍ୱାର ବା ଜକା ବା ଜକା ରୋଗ ବୋଲି କୁହାଯାଏ । ଏହା ୧୯୫୦ ମସିହାରୁ ବଶ୍ୱର ଆଫ୍ରିକା

ଏବଂ ଏସିଆ ମହାଦେଶର କିଛି ଅଞ୍ଚଳରେ ଥିବା ପ୍ରମାଣ ମିଳିଥିଲା । ୨୦୧୪ ମସିହାରେ ଏହା ପୂର୍ବଦିଗକୁ ବ୍ୟାପିଥିଲା, ଏବଂ ଏହା ପ୍ରଶାନ୍ତ ମହାସାଗର ପାର ହୋଇ ଫ୍ରେଞ୍ଚ୍ ପଲିନେସିଆ ଏବଂ ପରେ ଇଷ୍ଟର ଆଇଲ୍ୟାଣ୍ଡରେ ପହଞ୍ଚିବା ପରେ ୨୦୧୫ରେ କେନ୍ଦ୍ରୀୟ ଆମେରିକା ଏବଂ ଦକ୍ଷିଣ ଆମେରିକାରେ ଏହାର ପ୍ରଭାବ ଦେଖା ଦେଇଥିଲା । ବର୍ତ୍ତମାନ ଏହା ମାରାତ୍ମକ ମହାମାରୀର ରୂପ ନେଇଛି । ଏଥିପାଇଁ ବିଶ୍ୱର ଗୁଡିଏ ଦେଶରେ ମହିଳାମାନଙ୍କୁ ଗର୍ଭଧାରଣରୁ ବାରଣ କରାଯାଉଛି । କାରଣ ଏହାଦ୍ୱାରା ସଂକ୍ରମିତ ମହିଳାଙ୍କ ଗର୍ଭରୁ ଜନ୍ମିତ ସନ୍ତାନମାନଙ୍କ ମାନସିକ ଅଭିବୃଦ୍ଧି ନକାରାତ୍ମକ ବୋଲି ପ୍ରମାଣିତ ହୋଇଛି ।

ଏହି ଭୂତାଣୁ ପ୍ରଥମେ ଅପ୍ରେଲ ୧୯୪୭ ମସିହାରେ ଉଗାଣ୍ଡାର ଭିକ୍ଟୋରିଆ ହ୍ରଦ ନିକଟରେ ଥିବା ଜିକା ଜଙ୍ଗଲରେ ୟେଲୋ ଫିଭର୍ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟର ବୈଜ୍ଞାନିକ ମାନଙ୍କ ଦ୍ୱାରା ଧରାଯାଇଥିବା ଏକ ମାଙ୍କଡ଼ ଦେହରୁ ମିଳିଥିଲା । ଏହାପରେ ଜାନୁଆରୀ ୧୯୪୮ ମସିହାରେ ଏହା ଏକ ମଶା ଦେହରୁ ମିଳିଥିଲା । ୧୯୫୨ ମସିହାରେ ମାଙ୍କଡ଼ ଦେହରେ ଜ୍ୱର ହେବାପରେ ଏହି ଭୂତାଣୁକୁ ରକ୍ତରେ ଦେଖାଯାଇଥିଲା ଏବଂ ଏହାକୁ ଜିକା ଭୂତାଣୁ ବୋଲି ନାମାଙ୍କିତ କରାଯାଇଥିଲା । ମନୁଷ୍ୟମାନଙ୍କ ମଧ୍ୟରେ ଏହା ପ୍ରଥମଥର ୧୯୬୮ ମସିହାରେ ନାଇଜେରିଆରେ ମିଳିଥିଲା । ୧୯୫୧ଠାରୁ ୧୯୮୧ ପର୍ଯ୍ୟନ୍ତ ଏହା ଆଫ୍ରିକା ମହାଦେଶର ଅନେକ ଦେଶରେ ଦେଖାଦେଇଥିଲା । ଏହି ଭୂତାଣୁ ଏଡ଼ିସ୍ ମଶାଦ୍ୱାରା ବ୍ୟାପିଥାଏ । କିନ୍ତୁ ମନୁଷ୍ୟମାନଙ୍କରେ ଏହା ଅଣସୁରକ୍ଷିତ ଯୌନ ସମ୍ପର୍କଦ୍ୱାରା ମଧ୍ୟ ବ୍ୟାପିଥାଏ ଏବଂ ଗର୍ଭବତୀ ମହିଳାମାନଙ୍କଠାରୁ ଗର୍ଭରେ ଥିବା ଶିଶୁକୁ ମଧ୍ୟ ସଂକ୍ରମିତ ହୋଇପାରେ ।

ଏହି ଭୂତାଣୁଦ୍ୱାରା ହୋଇଥିବା ପ୍ରଥମ ସଂକ୍ରମଣ ୧୯୬୪ ମସିହାରେ ଲିପିବଦ୍ଧ ହୋଇଥିଲା, ଏଥିରେ ସାଧାରଣ ମୁଣ୍ଡବ୍ୟଥାରୁ ଆରମ୍ଭ କରି ଦେହରେ ଫୋଟକା ଉଠିବା, ଜ୍ୱର ଏବଂ ଅଣ୍ଟାବ୍ୟଥା ହୋଇଥିଲା । ଦୁଇଦିନ ମଧ୍ୟରେ ଦେହରେ ହୋଇଥିବା ଲାଲ ରଙ୍ଗର ଦାଗ ସବୁ ଉଭେଇ ଯାଇଥିଲା ଏବଂ ତିନିଦିନ ମଧ୍ୟରେ ଜ୍ୱର ମଧ୍ୟ କମ ହୋଇଥିଲା । ଜିକା ଭୂତାଣୁ ଦ୍ୱାରା କୌଣସି ମାରାତ୍ମକ ରୋଗ ହେଉନଥିବା ଦେଖାଯାଏ ।

ଆହ୍ୱାନର ଆଗାମୀ ସଂସ୍କରଣ ମାର୍ଚ୍ଚ ମାସରେ ପ୍ରକାଶିତ ହେବ । ନିଜ ଦ୍ୱାରା ଲିଖିତ କବିତା ଓ କାହାଣୀ ଶୀଘ୍ର ଆମ ନିକଟକୁ ପଠାନ୍ତୁ ।

ଆପଣଙ୍କ ଲିଖିତ କବିତା, କାହାଣୀ, ଭ୍ରମଣ କାହାଣୀ, ଶିଶୁକଥା, ଜୀବନ କଥା, ଇତିହାସ, ରୋଷେଇ, ଘରକରଣା, ସ୍ୱାସ୍ଥ୍ୟ, ବ୍ୟଙ୍ଗ ଇତ୍ୟାଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ପଠାଇ ପାରିବେ ।

ଆମ ଇ-ମେଲ୍ ଠିକଣା :

# aahwaan@gmail.com

<u>ଚିଠି ମାଧ୍ୟମରେ ଲେଖା ପ୍ରେରଣ କରିବା ଠିକଣା</u>

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ସମ୍ପାଦକ, 'ଆହ୍ୱାନ ଇ-ପତ୍ରିକା'

ବିମାନଗର, ୨ୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା
ଫୋନ : ୯୦୪୦୯୮୫୪୬୩ / ୯୮୬୧୯୬୨୧୬୦

ଆହ୍ୱାନ ଇ-ପତ୍ରିକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହିତ୍ୟ ଇ-ପତ୍ରିକା । ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ । ବେଳେ ବେଳେ ପୂଜା ପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବିଶେଷ ସଂସ୍କରଣମାନ ମଧ୍ୟ ପ୍ରକାଶିତ ହୁଏ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦି ଏଥିରେ ପ୍ରକାଶିତ ହୁଏ ।

ଏହି ପତ୍ରିକାରେ ଲେଖା ପ୍ରକାଶିତ କରିବା ପାଇଁ ନୂଆ ଓ ପୁରୁଣା ଉଭୟ ସାହିତ୍ୟକାରଙ୍କୁ ପ୍ରୋତ୍ସାହନ ଦିଆଯାଇଥାଏ । ଯେହେତୁ ଏହି ପତ୍ରିକା ନିଃଶୁଳ୍କ ବିତରଣ ନିମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ, ଲେଖିକାମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦିଆଯାଏ ନାହିଁ । ପାରିଶ୍ରମିକ ଆଶା କରୁଥିବା ଲେଖକ ଲେଖିକାମାନେ ନିଜ ଲେଖା ବ୍ୟବସାୟିକ ପତ୍ରପତ୍ରିକାକୁ ପଠାଇ ପାରିବେ ।

ଏହି ପତ୍ରିକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନିଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ । ପାଠକ ଚାହିଁଲେ ଏହି ପତ୍ରିକାର ଗୋଟିଏ ପ୍ରତିଲିପି ନିଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କରି ପାରିବେ ।

ଲେଖକ ଲେଖିକାମାନେ ନିଜ କୃତି ଆମ ନିକଟକୁ ଡ଼ାକଦ୍ୱାରା କିମ୍ବା ଇ-ମେଲ୍ ଦ୍ୱାରା ପଠାଇ ପାରିବେ । ଡ଼ାକ ଦ୍ୱାରା ପଠାଉଥିଲେ ନିଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନିର୍ଭୁଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କିମ୍ବା ଟାଇପ୍ କରି ମଧ୍ୟ ପଠାନ୍ତୁ । ଇ-ମେଲ୍ ଦ୍ୱାରା ପଠାଉଥିଲେ ଲେଖାକୁ ଲେଖି ସାରିବା ପରେ ସ୍କାନିଂ କରି ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।

ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରିବେଶ ଅନୁକୂଳ, କାରଣ ଏହାଦ୍ୱାରା କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ । ଆମେ ପରିବେଶ ପ୍ରଦୁଷଣ ବିରୋଧ କରୁ ।

ଆହ୍ୱାନ ଇ-ପତ୍ରିକାରେ ଲେଖା ପ୍ରକାଶିତ କରିବାପାଇଁ ଯଦି ଆପଣ ଇଚ୍ଛୁକ ତେବେ ନିଜ ଲିଖିତ କୃତିକୁ ଆପଣ ଆମ ନିକଟକୁ ପଠାନ୍ତୁ । ଯେହେତୁ ଏହି ପତ୍ରିକା ଇଣ୍ଟରନେଟରେ ପ୍ରକାଶିତ ହୁଏ ଏବଂ ପ୍ରତ୍ୟେକ ମାସରେ ଶହସ୍ରାଧିକ ଓଡ଼ିଆଙ୍କ କମ୍ପ୍ୟୁଟରରେ ଶୋଭାପାଏ ତେଣୁ ଏହି ପତ୍ରିକାପାଇଁ ଲେଖା ମଧ୍ୟ ଇଣ୍ଟର୍‌ନେଟ ମାଧ୍ୟମରେ ହିଁ ଗ୍ରହଣ କରାଯାଏ । ଯଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ଲେଖା

ପଠାଇ ପାରିବେ ନାହିଁ, ତେବେ ଆପଣ ନିଜ ଲେଖା ଧଳା କାଗଜରେ ଗୋଟିଏ ପାର୍ଶ୍ୱରେ ନିର୍ମଳ ହସ୍ତାକ୍ଷରରେ ଲେଖି ଆମ ନିକଟକୁ ନିମ୍ନ ଠିକଣାରେ ପଠାଇ ପାରିବେ ।

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ବୀମା ନଗର - ୨ୟ ଗଳି

ଆମ୍ବପୁଆ, ବ୍ରହ୍ମପୁର - ୭୬୦୦୧୦

ଓଡ଼ିଶା, ଫୋନ୍: ୯୦୪୦୯୮୫୪୭୩ / ୯୮୬୧୯୬୨୧୬୦

ଯଦି ଆପଣ ଇଣ୍ଟର୍‌ନେଟ୍ ମାଧ୍ୟମରେ ଲେଖା ପଠାଇବାକୁ ଚାହାନ୍ତି ତେବେ ନିଜ ଲେଖାକୁ ଟାଇପ୍ (ଓଡ଼ିଆ ୟୁନିକୋଡ଼ ଫଣ୍ଟରେ ଟାଇପ୍ କରିବେ ଯଥା ଅପ୍ରାନ୍ତ ଓଡ଼ିଆ / ଗୁଗୁଲ୍ ଓଡ଼ିଆ ଟ୍ରାନ୍‌ସ୍‌ଲିଟେରେସନ୍) କରି Microsoft Word Document ରେ ଆମ ନିକଟକୁ ପଠାନ୍ତୁ, କିମ୍ବା ଲେଖାକୁ ସ୍କାନ୍ କରି ଜେପିଇଜି ଫର୍ମାଟରେ ଇମେଲ୍ Attachment କରି ପଠାନ୍ତୁ । ଆମ ଇ-ମେଲ୍ ଠିକଣା ହେଲା - aahwaan@gmail.com

ଏହି ପତ୍ରିକା ଉନ୍ନତି ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।

ଧନ୍ୟବାଦ

# ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ପ୍ରତିଷ୍ଠାତା-ସମ୍ପାଦକ, 'ଆହ୍ୱାନ'

# ଜୟ ଓଡ଼ିଆ । ଜୟ ଓଡ଼ିଶା । ଜୟ ଜଗନ୍ନାଥ

ଯଦି ଏହି ସଂସ୍କରଣରେ କୌଣସି ତ୍ରୁଟିଥାଏ ତାହେଲେ ସେଥିପାଇଁ ସମ୍ପାଦକ କ୍ଷମାପ୍ରାର୍ଥୀ ।